ଓଡ଼ିଶା ମାଧ୍ୟମିକ ଶିକ୍ଷାବୋର୍ଡ଼ ସେକ୍ରେଟାରୀ ମହୋଦୟଙ୍କ ତା ୧୬ । ୪ । ୬୩ ରିଖ
ନଂ 1/4B-2-63 ନୋଟିସ୍ ଅନୁସାରେ ଓଡ଼ିଶାର ସମସ୍ତ ଜିଲ୍ଲା ପାଇଁ
ଷଷ୍ଠ ଶ୍ରେଣୀ ନିମନ୍ତେ ବିଶଦ ପାଠ୍ୟପୁସ୍ତକ ରୂପେ ମଞ୍ଜୁରୀ ପ୍ରାପ୍ତ ।

# ସାହିତ୍ୟ ସରଣୀ

( ବିଶଦ ପାଠ୍ୟ )

## ପ୍ରଥମ ଭାଗ

( ଷଷ୍ଠ ଶ୍ରେଣୀ ନିମନ୍ତେ )



ସଂଗ୍ରାହକ—
ଶ୍ରୀ ଚିନ୍ତାମଣି ପଣ୍ଡା, ବି. ଏ., ଡି. ଇଡ଼୍.
ସହକାରୀ ଶିକ୍ଷକ, ଭକ୍ତମଧୁ ବିଦ୍ୟାପୀଠ, କଟକ

ନୂତନ ମୁଦ୍ରଣ, ୧୯୬୩

ପ୍ରକାଶକ—
ଶ୍ରୀ ଅରକ୍ଷିତ ଦାସ, ଏମ୍. ଏ., ବି. ଇଡ଼୍.
ଦାଶରଥି ପୁସ୍ତକାଳୟ
ବାଲୁବଜାର, କଟକ—୨

ମୂଲ୍ୟ ଟ ୧ । ଏକଟଙ୍କା ପଚିଶ ନୂଆପଇସା

# ସୂଚୀ

বিষয় পৃষ্ঠা

ପ୍ରାୟ ଦେଢ଼ବର୍ଷ ପରେ ସେ ବାଲେଶ୍ୱର ଜିଲ୍ଲା ସ୍କୁଲର ଦ୍ୱିତୀୟ ଶିକ୍ଷକପଦରେ ନିଯୁକ୍ତ ହେଲେ ।

ବାଲେଶ୍ୱରରେ ସେ ଶିକ୍ଷକତା କରୁଥିବା ସମୟରେ କବିବର ରାଧାନାଥ ବାଲେଶ୍ୱର ଜିଲ୍ଲାସ୍କୁଲ ସମୂହର ଡେପୁଟି ଇନ୍‌ସ୍‌ପେକ୍ଟର ଥାଆନ୍ତି ଓ ବ୍ୟାସକବି ଫକୀରମୋହନ ସେନାପତି 'ସମ୍ବାଦ-ବାହିକା'ର ସମ୍ପାଦକ ଥାଆନ୍ତି । ଏହି ତିନ ସାହିତ୍ୟିକଙ୍କର ମିଳନ ଏହିଠାରେ ଘଟିଥିଲା ଓ ଏହି ଅପୂର୍ବ ମିଳନ ଫଳରେ ଓଡ଼ିଆ ସାହିତ୍ୟରେ ପଦ୍ୟ, ଗଦ୍ୟ ଓ ଉପନ୍ୟାସର ତ୍ରିବେଣୀସଙ୍ଗମ ସମ୍ଭବ ହୋଇଥିଲା ।

ମଧୁସୂଦନଙ୍କ ସାହିତ୍ୟ ଚର୍ଚ୍ଚାର ଅଗ୍ରମାରମ୍ଭ ଏହିଠାରେହିଁ ଘଟିଥିଲା । ସେତେବେଳେ ଓଡ଼ିଆ ସାହିତ୍ୟ ପ୍ରତିବେଶୀ ବଙ୍ଗୀୟ ସାହିତ୍ୟ ପ୍ରଭାବରେ ଲୋପ ପାଇବାକୁ ବସିଥିଲା । ମଧୁସୂଦନ ରାଧାନାଥ ଓ ଫକୀରମୋହନ ଓଡ଼ିଆ ସାହିତ୍ୟକୁ ବଞ୍ଚାଇ ରଖିବା ପାଇଁ ବଦ୍ଧପରିକର ହୋଇ ବାହାରି ପଡ଼ିଲେ । ଏଥି ନିମିତ୍ତ ଏମାନେ ପ୍ରଥମେ ଓଡ଼ିଆ ପାଠ୍ୟପୁସ୍ତକ ରଚନାରେ ମନୋନିବେଶ କଲେ । ମଧୁସୂଦନ ଏହି ପାଠ୍ୟପୁସ୍ତକ ରଚନାରେ ଅଗ୍ରଣୀ ହୋଇ ବାହାରିଲେ । ତାଙ୍କର ଓଡ଼ିଆ ସାହିତ୍ୟର ଭାଷା ଏ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ଆଦର୍ଶକ ହୋଇ ରହିଛି ।

ବାଲେଶ୍ୱରଠାରୁ ଆସି ମଧୁସୂଦନ କଟକଜିଲ୍ଲା ସ୍କୁଲ ସମୂହର ଡେପୁଟି ଇନ୍‌ସ୍‌ପେକ୍ଟର ଓ ପରେ ରେଭେନ୍‌ସା କଲେଜିଏଟ୍ ସ୍କୁଲର ପ୍ରଧାନ ଶିକ୍ଷକ ହେଲେ । ଏ ସ୍କୁଲର ସେ ପ୍ରଥମ ଓଡ଼ିଆ ପ୍ରଧାନ ଶିକ୍ଷକ ଥିଲେ । ତତ୍‌ପରେ ୧୮୯୬ ଖ୍ରୀଷ୍ଟାବ୍ଦରେ ସେ କଟକ ଟ୍ରେନିଂସ୍କୁଲରେ ପ୍ରଧାନ ଶିକ୍ଷକ ହେଲେ । ଦୀର୍ଘ ବାରବର୍ଷକାଳ ଏହି ଟ୍ରେନିଂ ସ୍କୁଲରେ ରହି ଶିକ୍ଷାର ଉନ୍ନତି ନିମିତ୍ତ ସେ କଟକର ନାନା ଜନହିତକର କାର୍ଯ୍ୟରେ ହାତଦେଲେ ।

୧୮୮୧ ଖ୍ରୀଷ୍ଟାବ୍ଦରେ ମଧୁସୂଦନ 'ଟାଉନହାଲ ସ୍କୁଲ୍' ନାମରେ ଏକ ମାଇନର ସ୍କୁଲ କଟକରେ ପ୍ରତିଷ୍ଠା କଲେ । ନାନା ବାଧା-ବିଘ୍ନର ସମ୍ମୁଖୀନ ହୋଇ ଦ୍ୱାରର ଦ୍ୱାରେ ଭିକ୍ଷା କରି, ନିଜର ସମସ୍ତ କିଛି ତ୍ୟାଗକରି ସେ 'ଟାଉନ ସ୍କୁଲକୁ' ୧୯୦୧ ଖ୍ରୀଷ୍ଟାବ୍ଦରେ ଟାଉନ ଭିକ୍ଟୋରିଅ ହାଇ ଇଂରାଜୀ ବିଦ୍ୟାଳୟ'ରେ ପରିଣତ କଲେ । ବର୍ତ୍ତମାନ ତାହା 'ଭକ୍ତମଧୁ ବିଦ୍ୟାପୀଠ' ନାମରେ ଅଭିହିତ ହେଉଛି ।

ସ୍କୁଲଟିଏ ଗଢ଼ି ଦେଶର ଉପଯୁକ୍ତ ନାଗରିକ ଗଠନ ଦିଗରେ ସେ ଯେତିକି ପ୍ରୟାସ କରିଥିଲେ, ଓଡ଼ିଆ ସାହିତ୍ୟକୁ ବଞ୍ଚାଇ ରଖିବାରେ ଓ ତାହାକୁ ଏକ ଯୁଗୋପଯୋଗୀ ଆଧୁନିକ ସାହିତ୍ୟରେ ପରିଣତ କରି ଜାତିଗଠନ କରିବା ଦିଗରେ ସେ ସେତିକି ଯତ୍ନଶୀଳ ଥିଲେ । ଟ୍ରେନିଂସ୍କୁଲରେ ପ୍ରଧାନ ଶିକ୍ଷକ ଥିଲାବେଳେ ସେ ବହୁ କବିତା ଓ ଗଦ୍ୟ ସାହିତ୍ୟ ରଚନା କରିଥିଲେ । ତନ୍ମଧ୍ୟରୁ 'ଋଷିପ୍ରାଣେ ଦେବାବତରଣ' ଓ ଶେଷ ଜୀବନରେ ରଚିତ 'ହିମାଳୟେ ଉଦୟ ଉତ୍ସବ' କବିତା ସର୍ବଶ୍ରେଷ୍ଠ । ବର୍ତ୍ତମାନ ଉତ୍କଳସାହିତ୍ୟ କ୍ଷେତ୍ରରେ ଓ ଉତ୍କଳୀୟ ଯୁବକମାନଙ୍କ ହୃଦୟରେ ଯଦି କିଛି ନୈତିକତା ଓ ଧର୍ମଭାବ ଦେଖାଯାଉଥାଏ, ତାହା ମୂଳରେ ମଧୁସୂଦନଙ୍କ ଲେଖନୀଶକ୍ତି ନିହିତ ଏହା ବୁଝିବାକୁ ହେବ ।

ଟ୍ରେନିଂସ୍କୁଲରେ ଥିଲାବେଳେ ମଧୁସୂଦନ ଆଦର୍ଶ ଶିକ୍ଷକତାର ପରାକାଷ୍ଠା ଦେଖାଇ ଯାଇଅଛନ୍ତି । ଥରେ ଟ୍ରେନିଂସ୍କୁଲ ଅଧୀନରେ ଥିବା ପ୍ରାକ୍ଟିସିଂ ଏମ୍.ଇ. ସ୍କୁଲର ଜଣେ ଛାତ୍ର ଶ୍ରେଣୀରେ ଝାଡ଼ା ଫେରି ଦେଇଥିଲେ । ମଧୁସୂଦନ ନିଜେ ଉକ୍ତ ପିଲାକୁ ଧୋଇ ଧାଇ ଦେଇ ତାହାର ଲୁଗାପଟା ସଫାକରି ତାହାର ଘରକୁ ପଠାଇ ଦେଇଥିଲେ । ଅନ୍ୟ ଏକ ଦିନ ଟ୍ରେନିଂସ୍କୁଲର ଚପରାଶି ଗୋଟିଏ

ମାନଙ୍କ ବଜାର ଦେଉଥିବାରୁ ସେ ତାହାକୁ ବେତ କଡ଼ା କଥାରେ ଗାଳି ଦେଉଥିଲେ । ମାତ୍ର ଅଳ୍ପ ସମୟ ପରେ ତାଙ୍କର କୋମଳହୃଦୟ କାନ୍ଦ କରିଥିଲା ଓ ସେ ଚପରାଶି ପାଖକୁ ଯାଇ କ୍ଷମା ମାଗିଥିଲେ ।

ଟ୍ରେନିଂସ୍କୁଲରେ ଛାତ୍ରମାନଙ୍କୁ ସାହିତ୍ୟଚର୍ଚ୍ଚାରେ ଅନୁପ୍ରାଣିତ କରିବାକୁ ସେ ସେଠି 'ଅବଲୋଚନା ସଭା' ପ୍ରତିଷ୍ଠା କରିଥିଲେ ତାହାକୁ ୧୯୦୩ ଖ୍ରୀଷ୍ଟାବ୍ଦରେ ନୂତନର ଉତ୍ତରେ 'ଉତ୍କଳ ସାହିତ୍ୟ ସମାଜ' ରୂପେ ପ୍ରତିଷ୍ଠା କରିଥିଲେ । ଏହି ସମାଜ ଏ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ଅଗ୍ରଗତିରେ ପରମ ସହାୟକ ହୋଇ ଅଛି । ତାଙ୍କର ଉଦ୍ୟମରେ 'ଶିକ୍ଷାବନ୍ଧୁ', 'ନବସଂବାଦ', 'ଅଣା' ଏବଂ 'ବ୍ରାହ୍ମ' ଆଦି ଓଡ଼ିଆ ପତ୍ରିକାମାନ ବାହାରି ଓଡ଼ିଶାର ଶିକ୍ଷକ ତଥା ଶିକ୍ଷିତ ମହଲରେ ନବପ୍ରାଣ ସଞ୍ଚାର କଲା । ତାଙ୍କର ଉଦ୍ୟମରେହିଁ କଟକର ଓଡ଼ିଆ ବଜାରରେ ବ୍ରାହ୍ମସମାଜ ଗୃହ ସ୍ଥାପିତ ହୋଇ ବ୍ରାହ୍ମମାନଙ୍କର ବ୍ରହ୍ମୋପାସନା ତଥା ଧର୍ମଚର୍ଚ୍ଚାର ପଥ ସୁଗମ କଲା ।

୧୯୦୨ ଖ୍ରୀଷ୍ଟାବ୍ଦରେ ମଧୁସୂଦନ ଓଡ଼ିଶାର ସ୍କୁଲ ସମୂହର ଇନସ୍ପେକ୍ଟର ପଦରେ ନିଯୁକ୍ତ ହେଲେ । ସବୁ କ୍ଷେତ୍ରରେ ଦକ୍ଷତାର ସହିତ କାର୍ଯ୍ୟ କରିଥିବାରୁ ସରକାର ତାହାଙ୍କୁ ୧୯୦୬ ଖ୍ରୀଷ୍ଟାବ୍ଦରେ ସମ୍ମାନସୂଚକ 'ରାୟବାହାଦୁର' ଉପାଧିରେ ଭୂଷିତ କରିଥିଲେ । ୧୯୦୯ ଖ୍ରୀଷ୍ଟାବ୍ଦରେ ସେ ରାଜକାର୍ଯ୍ୟରୁ ଅବସର ଗ୍ରହଣ କଲେ ।

ବାହାରର ଏତେ କାର୍ଯ୍ୟ କରୁଥିଲେ ମଧ୍ୟ ମଧୁସୂଦନ ତାଙ୍କର ପାରିବାରିକ ଜୀବନର ଉନ୍ନତି ନିମିତ୍ତ କେବେ ଅବହେଳା ପ୍ରଦର୍ଶନ କରୁ ନ ଥିଲେ । ସ୍ତ୍ରୀପୁତ୍ରକନ୍ୟାପରିବେଷ୍ଟିତ ହୋଇ ସେ ପ୍ରତ୍ୟହ ଈଶ୍ୱର ଉପାସନା କରୁଥିଲେ । ପ୍ରତ୍ୟହ ତାଙ୍କ ଘରେ ଅତିଥିଙ୍କର ଭିଡ଼ ଲାଗିଥିଲା ଓ ସେ ଡାକି ଡାକି କରି ପ୍ରତ୍ୟହ ଅତିଥିଙ୍କ ସୁଖ ସୁବିଧା କଥା ବୁଝୁଥିଲେ । ଏପରିକି ସୁଯୋଗ ଦେଖି ସେ ସେମାନଙ୍କର ପଦସେବା ମଧ୍ୟ କରୁଥିଲେ ।

ଏହିପରି ଅବିରତ ଦେଶ ଓ ଜାତି ପାଇଁ ତିଳ ତିଳ କରି ନିଜର ଜୀବନକୁ ଉତ୍ସର୍ଗ କରି ମଧୁସୂଦନ ୧୯୧୨ ଖ୍ରୀଷ୍ଟାବ୍ଦ ଡିସେମ୍ବର ତା ୨୮ ରିଖରେ ଇହଧାମରୁ ବିଦାୟ ନେଲେ । ତାଙ୍କ ବିୟୋଗରେ ବ୍ୟାସକବି ଫକୀରମୋହନ ଯଥାର୍ଥରେ ଗାଇଥିଲେ—

'ପର ଉପକାର ପାଇଁ ସତାଂହି ଜୀବନ
ବାକ୍ୟର ଦୃଷ୍ଟାନ୍ତ ଯହିଁ ଶ୍ରୀ ମଧୁସୂଦନ ।'

## ପ୍ରଶ୍ନ

୧ । ମଧୁସୂଦନ କି କି ଅନୁଷ୍ଠାନ ଗଢ଼ି ଯାଇଛନ୍ତି ?

୨ । ଓଡ଼ିଆ ସାହିତ୍ୟର ସମୃଦ୍ଧିପାଇଁ ସେ କଅଣ କରି ଯାଇଛନ୍ତି ?

୩ । ମଧୁସୂଦନଙ୍କୁ ଆଦର୍ଶ ଶିକ୍ଷକ ବୋଲି କାହିଁକି କୁହାଯିବ ?

୪ । ଅର୍ଥ ଲେଖ ଓ ବାକ୍ୟରେ ବ୍ୟବହାର କର:—
ମେଧାବୀ, କୃତିତ୍ୱ, ଦୂରଦର୍ଶିକ, ପରାକାଷ୍ଠା, ତାଣ୍ଡବଲୀଳା, ଅସୁମାରମ୍ଭ, ବଦ୍ଧପରିକର, ଅଗ୍ରଣୀ, ନିହିତ ।

୫ । ସଂକ୍ଷିପ୍ତ ଟିପ୍ପଣୀ ଦିଅ—ନଅଙ୍କ ଦୁର୍ଭିକ୍ଷ, ବ୍ରାହ୍ମଧର୍ମ, ଆଲୋଚନା ସଭା, ଟାଉନସ୍କୁଲ ଓ ରାୟବାହାଦୁର ।

୬ । ବିଶଦ ବ୍ୟାଖ୍ୟା କର:—
(କ) "ଏହି ଅପୂର୍ବ ମିଳନ ·····ସମ୍ଭବ ହୋଇଥିଲା ।"
(ଖ) "ବର୍ତ୍ତମାନ ଉତ୍କଳ ସାହିତ୍ୟ କ୍ଷେତ୍ରରେ ···
ଲେଖନୀହିଁ ନିହିତ ଏହା ବୁଝିବାକୁ ହେବ ।"

୭ । ଅର୍ଥ ନ ବଦଳାଇ ଭିନ୍ନ ପ୍ରକାରେ ପ୍ରକାଶ କର:—
(କ) ଇହଧାମରୁ ବିଦାୟ ନେଲେ । (ଖ) ପଥ ସୁଗମ ହେଲା । (ଗ) ବ୍ରାହ୍ମଧର୍ମ ଗ୍ରହଣ କଲେ । (ଘ) ପ୍ରତ୍ୟହ ଅତିଥିଙ୍କ ଭିଡ଼ ଲାଗିରହୁଥିଲା । (ଙ) ଗୃହନିର୍ମାଣ କାର୍ଯ୍ୟରେ ବ୍ୟାପୃତ ରହିଲେ ।

---

# ଶ୍ରୀରାମ ବନବାସ

( ୧ )

ଏକେ ତ ଅଯୋଧ୍ୟା ନଗରୀ-ରାଣୀ,
ଦେବସଭା ମଧ୍ୟେ ଯେସନ୍ତେ ଇନ୍ଦ୍ରାଣୀ,
ସିନ୍ଧୁ-ବକ୍ଷେ ଯଥା ରମା ସୁନ୍ଦରୀ,
ସରଯୂର ଅଙ୍କେ ରମ୍ୟ ନଗରୀ,
ବିରାଜିତ ଲୀଳା ରଙ୍ଗେ;
ଲୋଚନ-କୌମୁଦୀ ତାହାର ପ୍ରତିମା
ଖେଳଇ ଶୋଭା-ତରଙ୍ଗେ ।

( ୨ )

ସ୍ୱଭାବେ ନଗରୀ ଆନନ୍ଦମୟୀ,
ତେଣୁ ତା'ର ସୁତେ ବିଶ୍ୱ-ବିଜୟୀ,
ଆଜ ପୁଣି ତାର ପ୍ରାଣର ରାମ
ସର୍ବ ଗୁଣାକର କରୁଣାଧାମ
ହେବ ବୋଲି ଯୁବରାଜ;
ଭବନେ ଭବନେ ମହା ମହୋତ୍ସବ
ଲାଗିଅଛି ଆହା ଆଜ ।

( ୩ )

ଉଡ଼ଇ ପତାକା— ଶ୍ରେଣୀ ଅମ୍ବରେ,
ମଙ୍ଗଳ ବାଜଣା ବାଜେ ସୁସ୍ୱରେ,
ଶୁଭଇ ଚୌଦିଗେ ଶୁଭ ସଙ୍ଗୀତ,
ଧୂପ ପୁଷ୍ପ ଗନ୍ଧେ ଦିଗ ପୂରିତ,
ମହାନନ୍ଦେ ପୁରବାସୀ;
ବିବିଧ ବିଧାନେ ରତ ନରନାରୀ
ଶ୍ରୀରାମ ଶୁଭ ମନାସି ।

( ୪ )

ବାଳ ବୃଦ୍ଧ ଯୁବା ଝୁଣ୍ଡ ଦାଣ୍ଡରେ,
ଜୟ ଜୟ ରାମ ଧ୍ୱନି ତୁଣ୍ଡରେ,
ସିନ୍ଧୁ ନାଦ ପ୍ରାୟେ ସ୍ୱରେ ଚହଳ,
ଲହରୀ ପରାଏ ଲୋକ ଗହଳ,
ପ୍ରାସାଦ-ଶିଖରେ ଠୁଳ;
ଘନମାଳ-କେଶୀ ବିଦ୍ୟୁତ-ନୟନା
ଅଯୋଧ୍ୟା ରମଣୀ-କୁଳ ।

( ୫ )

ଉଲ୍ଲାସେ ଅତୁଳ ଅଯୋଧ୍ୟା-ପ୍ରାଣୀ,
ପୂର୍ଣ୍ଣିମା ନିଶାନ୍ତେ ସିନ୍ଧୁ ସମାନ,
କିନ୍ତୁ ସହସା କି ଘୋର ବାରତା
ପଶିଲା ଭେଦ ସେ ପୁର ଜନତା,
ରାମ ଯିବେ ବନବାସ,
ଜଳିଲା ବେଳକୁ ଦନକର ଶିଖା,
ସତ୍ୟ ଜାତା କଲ ଲ୍ଲାସ ।

( ୬ )

କେମନ୍ତେ ବର୍ଣ୍ଣିବି ଅଯୋଧ୍ୟା ଦଶା,
ସହସା ବିଷାଦ— ଭାରେ ବିବଶା,
କୋଟି କୋଟି ନେତ୍ର ବହଇ ନୀର,
ହାହାକାରେ ପୂର୍ଣ୍ଣ କୋଟି ମନ୍ଦିର,
ପ୍ରଭାମୟ ଏ ପ୍ରଭାତେ;
ଅମା-ଅନ୍ଧକାରେ ଘୋଟିଲା ସେ ପୁରୀ
ଦାରୁଣ ଶୋକ-ନିର୍ଘାତେ ।

( ୭ )

ଏଣେ ଦେଖ ଅହା ରାଜଭବନେ
ନୃପେ ଦଶରଥ ଭୂମିଶୟନେ,
କ୍ରୂର ବ୍ୟାଧ ଶରେ କୁରଙ୍ଗ ପ୍ରାୟେ,
ଶୋକେ ଅଚେତନ ସେ ନରରାୟେ,
ସେ ବିଷାଦ କି ବର୍ଣ୍ଣିବି;
ଜୀବନ-ପ୍ରଦୀପ ଶୋକ-ବାତାଘାତେ
ଯାଉଛି କି ଅହା ଲିଭି ।

( ୮ )

ଅନ୍ତଃପୁରେ ଯହିଁ ରାମ-ଜନନୀ
ପଶିଲା ସେ ଶୋକ ଯେସନେ ଅଶନି,
ପଡ଼ିଲେ ମୂର୍ଚ୍ଛିତା ଦେବୀ ଭୂତଳେ,
'ମୋ ରାମ ରାମରେ' ବୋଲି ବିକଳେ
ବକ୍ଷେ ରଖି ମାତୃ-ଶିର;
'ଉଠ ମା, ଉଠ ମା' ବୋଲନ୍ତି ଶ୍ରୀରାମ
ସୁଖେ, ଦୁଃଖେ ସଦା ଧୀର ।

( ୯ )

ଯତନେ ପ୍ରବୋଧି ଜନନୀ-ପ୍ରାଣ,
ସମସ୍ତଙ୍କ ପାଶୁଁ ଗୁଣ-ନିଧାନ,
ମାଗିଲେ ମେଲାଣି ସ୍ନେହ ବଚନେ,
କାନ୍ଦିଲେ ସକଳେ ଅସ୍ରୀସ୍ନୁ ଜନେ,
କର୍ମେ ସେ କନ୍ଦନ ରବ;
କୋଟି କୋଟି କଣ୍ଠୁ ବାହାର ସଘନେ
ଶବେ କମ୍ପିଲା ଅର୍ଣ୍ଣବ ।

( ୧୦ )

ସାଧ୍ୱୀ ପତିବ୍ରତା— ମୁକୁଟମଣି
ଜନକ-ଦୁହିତା ରାମ-ରମଣୀ,
ପ୍ରାଣକାନ୍ତ-ପଦେ ମସ୍ତକ ଥୋଇ,
ପାଦ-ପଦ୍ମ ଅଶ୍ରୁ— ଶିଶିରେ ଧୋଇ,
କହନ୍ତି, "ମୁଁ ଯିବି ବନେ,
ସଙ୍ଗେ ସଙ୍ଗେ ଥିବି ଶ୍ରୀପଦ ସେବିବି,
ଭକ୍ତା ମୋର ଶ୍ରୀଚରଣେ ।"

( ୧୧ )

କହନ୍ତି ଲକ୍ଷ୍ମଣ ପ୍ରାଣର ଭାଇ,
ଭକ୍ତିଭରେ ରାମ— ଚରଣେ ଗୁହିଁ,
"ସେ ଚରଣ ଯୁଗ ହୃଦରେ ଧରି,
ସଙ୍ଗେ ସଙ୍ଗେ ବନେ ବନେ ବିଚରି
ଆଜ୍ଞା ପାଳିବି ସତତ;
ଯାଉ ଅବା ରହୁ ଲକ୍ଷ୍ମଣ ଜୀବନ
ଲକ୍ଷ୍ମଣର ଏହି ବ୍ରତ ।"

( ୧୨ )

ଅବଶେଷେ ରାମ ସୀତା ଲକ୍ଷ୍ମଣ,
ଭକ୍ତିଭରେ ବନ୍ଦି ଗୁରୁଙ୍କ ଚରଣ,
ବାହାରିଲେ ଯହୁଁ ରାଜଦାଣ୍ଡରେ,
ବିକଳେ ବୋଲନ୍ତି ଅଯୋଧ୍ୟା ନଗରେ,
"ହା ରାମ, ସୀତା, ଲକ୍ଷ୍ମଣ !
ଯାଉଅଛ କାହିଁ, କେମନ୍ତେ ବଞ୍ଚିବୁଁ
ନ ଦେଖି ତୁମ୍ଭ ବଦନ ।"

( ୧୩ )

କରଯୋଡ଼ି ରାମ କହନ୍ତି ବାଣୀ,
"ପୁରବାସୀ ସବେ ଦଅ ମେଲଣି ।

ତୁମ୍ଭର ପବନ ସ୍ନେହ ଦୟାରେ
ବନଫୁଲ ଖ୍ୟାତ ବିଶ୍ୱ ସଂସାରେ ।
ତୁମ ସ୍ନେହ ସଦା ସ୍ମର,
ଇକ୍ଷ୍ୱାକୁ ବଂଶ ବର୍ଷ— ଅକ୍ଷେ ବାହୁଡ଼ିବୁଁ
ପୁଣି ଅଯୋଧ୍ୟା ନଗର ।

( ୧୪ )

ଛାଡ଼ିଲି ତୁମ୍ଭଙ୍କୁ ଏ ବନ୍ଧୁକୁଳ,
ପୁଣ୍ୟ ଅଯୋଧ୍ୟାର ଯଶ ବିପୁଳ ।"
ଏହା କହି ରାମ ସାଶ୍ରୁ ଲୋଚନେ
ଇଷ୍ଟଦେବ ସ୍ମରି ନିର୍ମଳ ମନେ,
ଦୁଃଖୀ ଭକ୍ତାଙ୍କ ପରାଏ;
ବଳ୍‌କଳ ବସନେ ଅବଳ ଶ୍ରୀଅଙ୍ଗ
ଗଲେ ବନେ ନରରାୟେ ।

## ପ୍ରଶ୍ନ

୧ । ଶ୍ରୀରାମଙ୍କ ଅଭିଷେକ ଉତ୍ସବ ନିମିତ୍ତ ଅଯୋଧ୍ୟାନଗରୀ କିପରି ଶୋଭା ପାଉଥିଲା ବର୍ଣ୍ଣନ କର ।

୨ । ଶ୍ରୀରାମଙ୍କ ବନବାସ ଖବର ଶୁଣି ସର୍ବତ୍ର କିପରି ଶୋକଛାୟା ଘୋଟିଗଲା ବର୍ଣ୍ଣନ କର ।

୩ । ବ୍ୟାଖ୍ୟା କର:—
"ଅନ୍ତଃପୁରେ ଯହିଁ ରାମ ଜନନୀ······ସୁଖେ ଦୁଃଖେ ସଦା ଧୀର ।"

୪ । "ଲକ୍ଷ୍ମଣେ ଅନୁକୂଳ······ରକ୍ଷା କରିବା ବଳ ଶ୍ରୀଙ୍କ" ପଦର ସରଳାର୍ଥ ବୁଝାଇ ଲେଖ ।

୫ । ଅର୍ଥ ଲୁହ—ରମା, ଧନକରଶିରୀ, ବିବଶ, ନିର୍ଘାତ, ଭୁବଙ୍ଗ, କରସ୍ଵପ୍ନ, ଅଶକ୍ତ, ଅଧିର ।

୬ । (କ) ପ୍ରଥମ ପଦରେ 'ଲୋଚନ-କୌମୁଦୀ' କାହିଁକି କୁହାଯାଇଛି ?

(ଖ) ଷଷ୍ଠପଦରେ କେବଳ 'ପ୍ରଣତେ' ନ କହି 'ପ୍ରଣମସ୍ତୁ ଏ ପ୍ରଣତେ' କାହିଁକି କୁହାଯାଇଛି ?

(ଗ) ଦଶମ ପଦରେ ଥିବା 'ପାଦପଦ୍ମ ଅଶ୍ରୁ-ଶିଶିରେ ଧୋଇ' କହିବାର ତାତ୍ପର୍ଯ୍ୟ କଅଣ ?

(ଘ) ଏକାଦଶ ପଦରେ ଥିବା 'ସେ ଚରଣ ଯୁଗ ହୃଦରେ ଧର' ପଦର ଅର୍ଥ କଅଣ ଓ ଏଥିରେ 'ଚରଣଯୁଗ'ର ତାତ୍ପର୍ଯ୍ୟ କଅଣ ?

୭ । ବିପରୀତାର୍ଥବୋଧକ ଶବ୍ଦ ଲୁହ—ପ୍ରାସାଦ, ଉଲ୍ଲାସ, ବିଷାଦ, କ୍ରୂର, ଜୀବନ, ଚହଲ, ଦେବ, ବନ୍ଦପ୍ରୀ, ସିନ୍ଧୁ, ସ୍ନେହ ।

୮ । ଅର୍ଥଗତ ପାର୍ଥକ୍ୟ ଦର୍ଶାଅ—ବାଣୀ ଓ ବାଣି, ବନ ଓ ବାନ, ପୁରୀ ଓ ପୁରି, ସନ୍ତତ ଓ ସନ୍ତପ୍ତ, ସିତା ଓ ସୀତା ।



# ପଠାଣି ସାମନ୍ତ

କଟକ ସହରର ପଶ୍ଚିମରେ ପ୍ରାୟ ଷାଠିଏ ମାଇଲ ଦୂରରେ ଖଣ୍ଡପଡ଼ା ରାଜ୍ୟ ଅବସ୍ଥିତ । ଏହି ରାଜବଂଶରେ ୧୮୩୫ ଖ୍ରୀଷ୍ଟାବ୍ଦରେ ପଠାଣି ସାମନ୍ତଙ୍କ ଜନ୍ମ । ତାଙ୍କର ପ୍ରକୃତ ନାମ ଚନ୍ଦ୍ରଶେଖର ସିଂହ ସାମନ୍ତ । ତାଙ୍କ ଉପରେ ଜନ୍ମିତ କୁଳ ପୁଅ ମରିଯାଇ-ଥିବାରୁ ପିତା ଦେଶାଚାରମତେ ତାଙ୍କ ନାମ 'ପଠାଣିଆ' ଦେଇଥିଲେ । ତେଣୁ ତାଙ୍କୁ ଲୋକେ ପଠାଣି ସାମନ୍ତ ବୋଲି ଡାକିବାକୁ ଲାଗିଲେ । ତାଙ୍କ ପିତା ଶ୍ୟାମବନ୍ଧୁ ସିଂହ ସାମନ୍ତ ହେଉଛନ୍ତି ରାଜା କୃଷ୍ଣଚନ୍ଦ୍ରଙ୍କର



ସାନଭାଇ । ଏତୋଇରବଳା ହୋଇଥିବାରୁ ଚନ୍ଦ୍ରଶେଖରଙ୍କୁ ମାତା ବିଷ୍ଣୁମାଳୀ ବଡ଼ ଆଦର ଯତ୍ନରେ ପାଳନ କରୁଥିଲେ ।

ପାଞ୍ଚବର୍ଷ ବେଳେ ଗଡ଼ ଚାଟଶାଳୀରେ ପଢୁଥିବାବେଳେ ଚନ୍ଦ୍ରଶେଖର ଅତି ଅଳ୍ପ ସମୟ ମଧ୍ୟରେ କଳାଗଣ୍ଡା, କୋଇଲି, ଗୋପୀଭାଷା, ସୁନ୍ଦରରତ୍ନାକର, ମଥୁରାମଙ୍ଗଳ, ଭାଗବତ ପ୍ରଭୃତି ଯେଉଁ କେତେ ଖଣ୍ଡ ଓଡ଼ିଆ ଛାପା ପୁସ୍ତକ ବାହାରିଥିଲା ତାହା ଭଲରୂପେ ପଢ଼ି ପକାଇଥିଲେ । ଅଜ ପୁସ୍ତକ ନ ଥିବାରୁ ନିଜ ଘରେ ଥିବା ତାଳପତ୍ର ପୋଥିମାନ ମଧ୍ୟ ସେ ପଢ଼ି ଶେଷକରି ଦେଇଥିଲେ । ସେ ପିତା ଓ ପିତୃବ୍ୟଙ୍କ ସାହାଯ୍ୟରେ ସଂସ୍କୃତ ପଢ଼ିବାକୁ ଲାଗିଲେ । ନିଜ ଘରେ ଥିବା ସମସ୍ତ ସଂସ୍କୃତ ପୋଥି ଘାଣ୍ଟି ସେ କାବ୍ୟ, ନାଟକ, ପୁରାଣ, ସ୍ମୃତି, ନ୍ୟାୟ

ଅତି ଜଟିଳ ଶାସ୍ତ୍ରମାନ ଅଧ୍ୟୟନ କରି ପକାଇଥିଲେ । ସେତେବେଳକୁ ତାଙ୍କୁ ମାତ୍ର ଦଶବର୍ଷ ବୟସ ହୋଇଥିଲା ।

ତତ୍‌ପରେ ତାଙ୍କ ମନ ଜ୍ୟୋତିଷ ଶିକ୍ଷା ଆଡ଼କୁ ଗଲା । ତାଙ୍କର ଜଣେ କକେଇ ଜ୍ୟୋତିଷ ଶାସ୍ତ୍ରରୁ ଅଳ୍ପ ଅଧ୍ୟୟନ କରିଥିଲେ । ଚନ୍ଦ୍ରଶେଖରଙ୍କୁ ଆଗ୍ରହୀ ଦେଖି ଉକ୍ତ ଶାସ୍ତ୍ର ସମ୍ବନ୍ଧରେ କିଛି ଶିକ୍ଷା ଦେଇଥିଲେ ଓ କେତେକ ଗ୍ରହ ନକ୍ଷତ୍ର ଚିହ୍ନାଇ ଦେଇଥିଲେ । ଗ୍ରହ ନକ୍ଷତ୍ର ସବୁ କିପରି ପରସ୍ପରର ସ୍ଥାନ ପରିବର୍ତ୍ତନ କରୁଛନ୍ତି ତାହା ଦେଖିବା ପାଇଁ ଚନ୍ଦ୍ରଶେଖରଙ୍କର ବିଶେଷ କୌତୂହଳ ଜାତ ହୋଇଥିଲା । ରାତି ରାତି ଜାଗ୍ରତ ରହି ସେ ସେମାନଙ୍କର ଗତିବିଧି ଲକ୍ଷ୍ୟ କରୁଥିଲେ ।। ପ୍ରତ୍ୟହ ସେମାନଙ୍କର ପରସ୍ପରଠାରୁ ବ୍ୟବଧାନର ତାରତମ୍ୟ ଲକ୍ଷ୍ୟ କରୁଥିବାବେଳେ ସେ ଏ ନିତ୍ୟ ଗତିଶୀଳ ଜଗତର ଅନନ୍ତ ବୈଷମ୍ୟରେ ସାମ୍ୟର ସନ୍ଧାନ ପାଇ ଅନନ୍ୟ ଭାବସ୍ଫୂର୍ତ୍ତିରେ ମଗ୍ନ ହୋଇଯାଉଥିଲେ ।। ରାଜାଙ୍କର ପୁସ୍ତକାଗାରରେ ଥିବା ନାନାବିଧ ଓଡ଼ିଆ ଓ ସଂସ୍କୃତ ଭାଷାରେ ଜ୍ୟୋତିଷ ପୋଥି ଓ ପୁସ୍ତକ ଚନ୍ଦ୍ରଶେଖର ଅଧ୍ୟୟନ କରିବାକୁ ଲାଗିଲେ ।

ସେତେବେଳେ ଜ୍ୟୋତିଷର ଅର୍ଥ ଥିଲା ଫଳିତ ଜ୍ୟୋତିଷ । ବାରବର୍ଷ ବୟସ ହେଲାବେଳକୁ ଚନ୍ଦ୍ରଶେଖର ଏହି ଫଳିତ ଜ୍ୟୋତିଷ ସାଧନାରେ ପାରଦର୍ଶିତା ଲାଭ କରିଥିଲେ ଓ ଜ୍ୟୋତିଷଶାସ୍ତ୍ରର ଶ୍ଳୋକମାନ ମୁଖସ୍ଥ କରି ପକାଇଥିଲେ । ଗଣିତ ଜ୍ୟୋତିଷର ଚର୍ଚ୍ଚା କେହି ନ ଥିବାର ଦେଖି ସେ ସେଥିରେ ମନ ଦେଲେ ଓ ପ୍ରାୟ ପନ୍ଦରବର୍ଷ ବୟସରେ ସେଥିରେ ଧୁରନ୍ଧର ହୋଇ ଉଠିଲେ । ପୂର୍ବକାଳରେ ଗଣିତଜ୍ୟୋତିଷର ସିଦ୍ଧାନ୍ତ ଅନୁସାରେ ପଞ୍ଜିକାମାନ ଲେଖା ଯାଉଥିଲା । ଶାସ୍ତ୍ର ଅଧ୍ୟୟନ କରି ଓ ରାତିରେ ବଂଶନଳୀ

ସାହାଯ୍ୟରେ ଗ୍ରହ ନକ୍ଷତ୍ରର ସ୍ଥାନ ଓ ଗତିବିଧି ଲକ୍ଷ୍ୟକରି ସେ ଦେଖିଲେ ଯେ ପାଞ୍ଜିର ଲେଖାମତେ ଗ୍ରହ ନକ୍ଷତ୍ରଙ୍କର ଗତିବିଧି ସଙ୍ଘଟିତ ହେଉ ନାହିଁ । ନିର୍ଦ୍ଦିଷ୍ଟ ସମୟର ଆଗରେ ହୋଇ ଯୋଗ, ଲଗ୍ନ, ତିଥି, ଗ୍ରହଣ ଆଦି ଘଟୁଛି । ପୂର୍ବର ସିଦ୍ଧାନ୍ତମାନ ଓ ପଞ୍ଜିକାର ଗଣନାମାନ ଅଶୁଦ୍ଧ ବୋଲି ସେ ଘୋଷଣା କଲେ ।

ପାଶ୍ଚାତ୍ୟ ବୈଜ୍ଞାନିକଙ୍କ ସିଦ୍ଧାନ୍ତ ଅନୁସାରେ ସୂର୍ଯ୍ୟ ସ୍ଥିର ଓ ପୃଥିବୀ ସୂର୍ଯ୍ୟ ଚାରିପଟେ ଘୂରୁଅଛି । ମାତ୍ର ପଠାଣିସାମନ୍ତ ଶାସ୍ତ୍ରମତେ ଓ ଦୃକ୍‌ସିଦ୍ଧାନ୍ତମତେ ଘୋଷଣା କଲେ, ପୃଥିବୀ ସ୍ଥିର ଓ ସୂର୍ଯ୍ୟ ତାହାର ଚାରିପଟେ ଘୂରୁଅଛି ॥

ଏଣେ ଶୁଣ ଚମତ୍କାର ଘଟଣା । ୧୮୯୫ ଖ୍ରୀଷ୍ଟାବ୍ଦରେ ରେଭେନ୍‌ସା କଲେଜର ପ୍ରସିଦ୍ଧ ବିଜ୍ଞାନ ଅଧ୍ୟାପକ ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି, ସାମନ୍ତ ଚନ୍ଦ୍ରଶେଖରଙ୍କ ଏବଂବିଧ ସିଦ୍ଧାନ୍ତର ଦୃଢ଼ ଘୋଷଣା ଶୁଣି ତାଙ୍କ ନିକଟକୁ ଗଲେ ଓ ତାଙ୍କ ସହ ଜ୍ୟୋତିଷଶାସ୍ତ୍ର ଓ ତାଙ୍କର ଗବେଷଣାଲବ୍ଧ ତତ୍ତ୍ୱର ସମ୍ୟକ୍ ଆଲୋଚନା କଲେ । ପାଶ୍ଚାତ୍ୟ ବୈଜ୍ଞାନିକଙ୍କ ନିର୍ମିତ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଏକ ନିର୍ଦ୍ଦିଷ୍ଟ ସମୟରେ ଶୁକ୍ର ଓ ମଙ୍ଗଳ ଗ୍ରହ ମଧ୍ୟରେ ଥିବା ଦୂରତ୍ୱକୁ ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ମାପି ଯେଉଁ ୬° ଡିଗ୍ରୀ ବୋଲି ସ୍ଥିର କରିଥିଲେ, ଚନ୍ଦ୍ରଶେଖର ତାଙ୍କର ସାମାନ୍ୟ ବଉଁଶ ନଳିକା ସାହାଯ୍ୟରେ ମାପି ସେହି ୬° ଡିଗ୍ରୀ ବୋଲି କହିଦେବାରୁ ଆଚାର୍ଯ୍ୟ ମହାଶୟ ସ୍ତମ୍ଭୀଭୂତ ହୋଇଯାଇ ତାହାଙ୍କୁ ଅବନତ ମସ୍ତକରେ ଅଭିବାଦନ ଜଣାଇଥିଲେ । ଦେଶ ବିଦେଶର ବହୁଳ ପତ୍ରପତ୍ରିକାରେ ଲେଖି ସେ ନୀରବ ତପସ୍ୱୀ ସାଧକଙ୍କ ମହାମୂଲ୍ୟ ପ୍ରତିଭାର ପ୍ରଶଂସା କରି ନିଜେ ତାହାଙ୍କୁ ବିଶ୍ୱଦରବାରରେ ପରିଚିତ କରାଇଥିଲେ ।

ପାଶ୍ଚାତ୍ୟ ବୈଜ୍ଞାନିକମାନେ ଯେତେବେଳେ ଦେଖିଲେ ଯେ ପଠାଣି ସାମନ୍ତ ଗ୍ରହନକ୍ଷତ୍ରଙ୍କ ସ୍ଥିତି ଓ ଗତିବିଧି ଠିକ୍‌ରୂପେ ଗଣନା କରି କହୁଛନ୍ତି ଏବଂ ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ ତାଙ୍କ ଗଣନାର ଠିକ୍ ସମୟରେ ସଂଘଟିତ ହେଉଅଛି, ସେତେବେଳେ ସେମାନେ ପ୍ରାଚ୍ୟ ବିଜ୍ଞାନକୁ ହେୟ ଚକ୍ଷୁରେ ଦେଖୁଥିବାରୁ ଲଜ୍ଜାରେ ମସ୍ତକ ଅବନତ କରିପକାଇଲେ । କ୍ରମେ ପଠାଣି ସାମନ୍ତଙ୍କ ଖ୍ୟାତି ଇଂଲଣ୍ଡ, ଜର୍ମାନୀ, ଫ୍ରାନସ୍, ଇଟାଲି ଆଦି ସଭ୍ୟରାଷ୍ଟ୍ରମାନଙ୍କରେ ବ୍ୟାପିଗଲା ।

ଇଂରେଜ ସରକାର ଚନ୍ଦ୍ରଶେଖରଙ୍କ ସାଧନା ଓ ସିଦ୍ଧି ନିମିତ୍ତ ୧୮୯୪ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୨୯ତାରିଖ ଦିନ କଟକ ବାରବାଟୀ ଦୁର୍ଗ ମଧ୍ୟରେ ଗୋଟିଏ ସ୍ୱତନ୍ତ୍ର ଦରବାର ଡକାଇ ଦେଶର ବହୁ ମାନ୍ୟଗଣ୍ୟ ରାଜା, ମହାରାଜା ଓ ସୁଧୀବୃନ୍ଦଙ୍କ ସମକ୍ଷରେ ମହା-ଆଡ଼ମ୍ବର ସହକାରେ ତାହାଙ୍କୁ 'ମହାମହୋପାଧ୍ୟାୟ' ପଦବୀ ଅର୍ପଣ କରିଥିଲେ । ସେହିଦିନଠାରୁ ତାଙ୍କ ପାଇଁ ମାସିକ ଟ ୫୦୯. ଲେଖାଏଁ ବୃତ୍ତି ମଧ୍ୟ ଖଞ୍ଜିଦେଲେ । ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ଯଦି ଚେଷ୍ଟା କରି ନ ଥାଆନ୍ତେ ତାହାହେଲେ ହୁଏତ ସେ ଖତ ଗଦାରେ ପଦ୍ମଟିଏ ଫୁଟିଲା ପରି ଚିରଦିନ ଲୋକଲୋଚନର ଅଗୋଚରରେ ରହିଯାଇ ଥାଆନ୍ତେ ।

ପଠାଣି ସାମନ୍ତଙ୍କଠାରେ ସମସ୍ତ ମହାନ୍ ଗୁଣର ଅପୂର୍ବ ସମନ୍ୱୟ ଘଟିଥିଲା । ଜ୍ୟୋତିଷ ଛଡ଼ା ସେ ସଂସ୍କୃତ ସାହିତ୍ୟର କାବ୍ୟ, ଅଳଙ୍କାର, ନାଟକ ଆଦିର ଆଲୋଚନା କରି ଅସାଧାରଣ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ସେ ନିଜର ଦୃକ୍‌ସିଦ୍ଧ ଗଣନାକୁ ସଂସ୍କୃତ ଶ୍ଳୋକାକାରରେ ରଚନା କରି ଏକ ବିରାଟ ଗଣିତ ଜ୍ୟୋତିଷ ଗ୍ରନ୍ଥ ଲେଖିଦେଇ ଗଲେ ଯାହାର ନାମ ହେଉଛି

'ସିଦ୍ଧାନ୍ତ ଦର୍ପଣ' । ଏହି ପୁସ୍ତକ ସଂସ୍କୃତ ଭାଷା ରାଜ୍ୟରେ ଏକ ଅମୂଲ୍ୟ ସମ୍ପଦ ଓ ପ୍ରାଚ୍ୟ ଜ୍ୟୋତିର୍ବିଜ୍ଞାନର ରତ୍ନାଧାର । ଜର୍ମାନୀ ଭାଷାରେ ଅନୁବାଦିତ ହୋଇ ଏହା ଉଚ୍ଚ ପ୍ରଶଂସା ଲାଭ କରିଛି ।

ପଠାଣି ସାମନ୍ତଙ୍କ ଉତ୍ତରୋତ୍ତର ପଦମର୍ଯ୍ୟାଦା ବୃଦ୍ଧିରେ ତାଙ୍କର ଭ୍ରାତୃଷ୍ପୁତ୍ର ଖଣ୍ଡପଡ଼ାର ରାଜା ବିଶେଷ ଈର୍ଷାନ୍ୱିତ ହୋଇ ପଡ଼ିଥିଲେ । ରାଜ୍ୟର ଯାନବାହନ ବନ୍ଦ କରି ତାହାଙ୍କୁ କଟକ ଯାଇ 'ମହାମହୋପାଧ୍ୟାୟ' ଉପାଧି ପାଇ ନ ପାରିବାର ଚକ୍ରାନ୍ତ କରିଥିବାରୁ ସେ ଇଂରେଜ କମିଶନରଙ୍କଠାରୁ ଦଣ୍ଡାଦେଶ ପାଇଥିଲେ । ମାତ୍ର ପଠାଣି ସାମନ୍ତ କମିଶନରଙ୍କ ସମକ୍ଷରେ, "ମୋ ରାଜାର ରାଜାଙ୍କୁ ଅପମାନ ଦିଆଯାଉଥିବାବେଳେ ମୋତେ ଏ ଉପାଧି ଦିଆଯିବା ହାସ୍ୟାସ୍ପଦ" ବୋଲି ବହୁ ପ୍ରତିବାଦ କରିବାରୁ ଦଣ୍ଡାଦେଶ ପ୍ରତ୍ୟାହାର କରି ନିଆଗଲା । ଚନ୍ଦ୍ରଶେଖର ଯେ କେଡ଼େ ଉଦାରହୃଦୟ, ଉଚ୍ଚମନା ଓ ନିର୍ଲିପ୍ତପୁରୁଷ ଥିଲେ ତାହା ଏହି ଦୃଷ୍ଟାନ୍ତରୁ ଜଣାପଡ଼େ । ପଦମର୍ଯ୍ୟାଦାଲିପ୍ସା ତାହାଙ୍କୁ ବଶ କରି ପାରି ନ ଥିଲା ।

ତାଙ୍କ ଘରକୁ ଦୂରଦୂରାନ୍ତରରୁ ବଡ଼ ବଡ଼ ଜ୍ୟୋତିର୍ବିଦ୍ ପଣ୍ଡିତ ଆସି ତାଙ୍କ ସଙ୍ଗେ ଜ୍ୟୋତିଷଶାସ୍ତ୍ର ଆଲୋଚନା କରୁଥିଲେ । ଅନେକ ଲୋକ ତାଙ୍କ ପାଖକୁ ନିଜ ନିଜର କୋଷ୍ଠୀ ଲେଖାଇବା ଚକ୍ରନା କରାଇ ନେବାକୁ ଆସୁଥିଲେ । ଇଚ୍ଛା କରିଥିଲେ ସେ ସେମାନଙ୍କଠାରୁ ବହୁ ଅର୍ଥ ଉପାର୍ଜ୍ଜନ କରିପାରି ଥାଆନ୍ତେ । ମାତ୍ର ନିଜର ଦରିଦ୍ର ଅବସ୍ଥା ସତ୍ତ୍ୱେ ରାଜବଂଶର ସମ୍ମାନ ବଜାୟ ରଖିବା ନିମିତ୍ତ ସେମାନଙ୍କର ସମସ୍ତ କାର୍ଯ୍ୟ ବିନା ପାରିଶ୍ରମିକରେ କରି-ଦେଉଥିଲେ ଓ ନିଜର ସାଧ୍ୟମତେ ସେମାନଙ୍କ ଖାଦ୍ୟପେୟର ବନ୍ଦୋବସ୍ତ ମଧ୍ୟ କରୁଥିଲେ ।

ଗଣନା ଦ୍ଵାରା ତାଙ୍କ ମୃତ୍ୟୁର ଦିନ ପୂର୍ବରୁ ନିର୍ଦ୍ଧାରଣ କରି ସେ ଶ୍ରୀକ୍ଷେତ୍ରରେ ଦେହତ୍ୟାଗ କରିବାର ଇଚ୍ଛା ପ୍ରକଟ କଲେ ଓ ସମସ୍ତଙ୍କ ଠାରୁ ବିଦାୟ ନେଇ ଚାଲିଗଲେ । ସେଠାରେ ନୀଳଚକ୍ରଙ୍କୁ ଚାହିଁ ୧୯୦୪ ଖ୍ରୀଷ୍ଟାବ୍ଦ ମଇ ୧୦ ତାରିଖ ଦିନ ସେ ସ୍ତ୍ରୀ-ପୁତ୍ରଙ୍କୁ ଶୋକ ସାଗରରେ ଭସାଇ ଦେଇ ଏ ମର ଶରୀର ତ୍ୟାଗ କଲେ ।

ସେ ଚାଲି ଯାଇଛନ୍ତି ସତ, କିନ୍ତୁ ତାଙ୍କ ପ୍ରଚଳିତ ବିଶୁଦ୍ଧ ପଞ୍ଜିକା ଓ 'ସିଦ୍ଧାନ୍ତଦର୍ପଣ' ଯେତେ ଦିନ ପର୍ଯ୍ୟନ୍ତ ଥିବ ସେତେ ଦିନ ପର୍ଯ୍ୟନ୍ତ ସେ ଓଡ଼ିଶା ତଥା ଭାରତବାସୀଙ୍କର ଚିର ନମସ୍ୟ ଓ ଚିରସ୍ମରଣୀୟ ହୋଇ ରହିଥିବେ ।

## ପ୍ରଶ୍ନ

୧ । ଚନ୍ଦ୍ରଶେଖରଙ୍କୁ ପଠାଣିସାଆନ୍ତ ବୋଲି କାହିଁକି ଡକାଯାଉଥିଲା ?

୨ । ଦେଶବିଦେଶରେ ଚନ୍ଦ୍ରଶେଖର କିପରି ପରିଚିତ ହେଲେ ?

୩ । ଚନ୍ଦ୍ରଶେଖରଙ୍କୁ ନିର୍ଭୀକ ଓ ଉଦାରମନା କାହିଁକି କୁହାଯିବ ?

୪ । ଶବ୍ଦାର୍ଥ କୁହ—ସୂକ୍ଷ୍ମ, ଅଭ୍ରାନ୍ତ, ମିତବ୍ୟୟ, ବ୍ୟବଧାନ, ତାରତମ୍ୟ, କୌତୂହଳ, ଦୃକ୍‌ସିଦ୍ଧାନ୍ତ ଓ ଗନ୍ତାଘର ।

୫ । ବିପରୀତାର୍ଥବୋଧକ ଶବ୍ଦ କୁହ—ଜଟିଳ, ସୂକ୍ଷ୍ମ, ଆଦର, ଅଗ୍ରଣୀ, ଜନ୍ମିତ୍ର, ଅନନ୍ତ, ସାମ୍ୟ, ମହାସ୍ୱପ୍ନୀ, ଅପମାନ, ମର ।

୬ । ( କ ) "ପ୍ରତ୍ୟହ···ଅନନ୍ତ ଭାବରାଶିରେ ମଗ୍ନ ଯାଉଥିଲେ ।" ଏହାର ପୂର୍ବାପର ସମ୍ପର୍କ ଦେଇ ସରଳାର୍ଥ ଲେଖ ।

( ଖ ) "ଅଗ୍ରଯ୍ୟ········ଲୋକଲୋଚନର ଅଗୋଚରରେ ରହିଯାଇଥାଅନ୍ତେ ।" ଏହାର ବିଶଦ ବ୍ୟାଖ୍ୟା କର ।

୭ । ଟିପ୍ପଣୀ ଦିଅ—ପଞ୍ଜିକା, ଫଳିତଜ୍ୟୋତିଷ, ମହାମହୋପାଧ୍ୟାୟ

# ଓଡ଼ିଶାର ବନ୍ୟା ଓ ସିମଳଦା ଘାଇ

ଭାରତ ପୃଥିବୀରେ ଦାରିଦ୍ର୍ୟତମ ଦେଶ ବୋଲି ଆମ ଦେଶର ନେତୃବର୍ଗ କହୁଥାନ୍ତି । ସେଥିରେ ପୁଣି ଓଡ଼ିଶା ଦରିଦ୍ରତମ ରାଜ୍ୟ ବୋଲି ମହାତ୍ମା ଗାନ୍ଧିଙ୍କଠାରୁ ଆରମ୍ଭ କରି ଗୋପବନ୍ଧୁଙ୍କ ପର୍ଯ୍ୟନ୍ତ ଓଡ଼ିଶାକୁ ଭଲପାଉଥିବା ବ୍ୟକ୍ତିବୃନ୍ଦ ସ୍ୱୀକାର କରିଛନ୍ତି । ଓଡ଼ିଶାର ଦାରିଦ୍ର୍ୟର ପ୍ରଧାନ କାରଣ ହେଉଛି ନଈବଢ଼ି ଓ ମରୁଡ଼ି । ଓଡ଼ିଶା ଗୋଟିଏ କୃଷିପ୍ରଧାନ ରାଜ୍ୟ । ଏହାର ଶତକଡ଼ା ୮୦ ଜଣ ଲୋକ କୃଷି ଉପରେହିଁ ନିର୍ଭର କରି ଚଳନ୍ତି । ବନ୍ୟା ବା ମରୁଡ଼ି ଆସି ଫସଲ ସମ୍ପୂର୍ଣ୍ଣ ନଷ୍ଟ କଲେ କୃଷିଜୀବୀ ଲୋକ ଉଚ୍ଛୁନ୍ନ ହୋଇଯାଆନ୍ତି । ଓଡ଼ିଶାର ଝରଣନ୍ଦୁ ବନ୍ୟା ଓଡ଼ିଶାକୁ ସୁଜଳା, ସୁଫଳା ଓ ଶସ୍ୟଶ୍ୟାମଳା କରିବାରେ ପ୍ରଧାନ ପ୍ରତିବନ୍ଧକ ହୋଇ ଆସିଛି ।

୧୯୩୦ ମସିହାର ପ୍ରଳୟଙ୍କରୀ ବନ୍ୟାରେ କାଠଯୋଡ଼ିର ଶାଖା ସିଧୁଆ ନଈର ଦକ୍ଷିଣପଟ ବନ୍ଧରେ ଖଣ୍ଡେଇତା ଘାଇ ଯେଉଁ ବିପର୍ଯ୍ୟୟ ଘଟାଇଥିଲା ତହିଁରୁ ଲୋକେ ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ମୁକ୍ତ ହୋଇନାହାନ୍ତି । ୧୯୫୫ ମସିହାର ଅଗ୍ରୁନକ ଏବଂ ଅଭୂତପୂର୍ବ ବନ୍ୟା ଫଳରେ ସେପ୍ଟେମ୍ବର ୬ ତାରିଖ ସକାଳ ୫ଟା ସମୟରେ କାଠଯୋଡ଼ିର ବାମପାର୍ଶ୍ୱରେ ଦଳେଇଘାଇ ଭାଙ୍ଗି ଓଡ଼ିଶାର ଭାତହାଣ୍ଡି ବୋଲି କହୁଥିବା କଟକଜିଲ୍ଲାର କାଠଯୋଡ଼ି ମହାନଦୀ ଅନ୍ତର୍ଗତ ବହୁତ ସୁରକ୍ଷିତ ଅଞ୍ଚଳକୁ ଉପର ହାତଶିରୀ କରି ପକାଇଲା ତାହାତ ଏବେ କାଲିକାର ଘଟଣା । ଏ ବନ୍ୟାରେ ଯେଉଁ କ୍ଷତି ଘଟିଥିଲା ତାହାର ପରିମାଣ ପ୍ରାୟ ୩୦ କୋଟି ଟଙ୍କା ବୋଲି କଳନା କରାଯାଇଥିଲା । ଲୋକଙ୍କୁ ଥଇଥାନ କରିବା ପାଇଁ ଓଡ଼ିଶା ସରକାରଙ୍କ

ଯଥେଷ୍ଟ ବାଉଳ ଅଭାବରେ ପ୍ରାୟ ଏଗାର କୋଟି ଟଙ୍କାର ସାହାଯ୍ୟ ଦିଆଯାଇଥିଲା ।

୧୯୫୫ ମସିହା ସୁଦ୍ଧା ହୀରାକୁଦ ବନ୍ଧ ନିର୍ମାଣକାର୍ଯ୍ୟ ଶେଷ ହୋଇ ଯାଇଥିବାରୁ ଆଶା କରାଯାଉଥିଲା ଏ ବନ୍ୟା ଖାଠଯୋଡ଼ି ମହାନଦୀର ଶେଷ ବନ୍ୟା ହୋଇ ରହିବ । କିନ୍ତୁ ଲୋକଙ୍କ ମନରୁ ଏହାର ନିଦାରୁଣ ସ୍ମୃତି ପାସୋର ନ ଯାଉଣୁ, ଭାଙ୍ଗି ଯାଉଥିବା ଲୋକଙ୍କର ଅଣ୍ଟା ପିଠି ସଳଖ ନ ହେଉଣୁ ହଠାତ୍ ୧୯୫୯ ମସିହା ସେପ୍ଟେମ୍ବର ମାସରେ ମହାନଦୀରେ ପୁଣି ଏକ ଭୀଷଣ ବନ୍ୟା ଦେଖା ଦେଲା । ସେହି ମାସ ୧୪ ତାରିଖ ସକାଳୁ ଲୋକେ ଶୁଣିବାକୁ ପାଇଲେ ଦେବୀନଦୀର ଦକ୍ଷିଣ ପାର୍ଶ୍ୱ ବନ୍ଧରେ ଗୋବରପୁର ଥାନା ସିମଳଦା ଗ୍ରାମ ମୁଣ୍ଡରେ ଭୋର ୪ ଟାରେ ଏକ ଘାଇ ଭାଙ୍ଗିଛି ।

ଘାଇ ଭାଙ୍ଗିଥିବା ଖବର ପାଇ ବାଉଳ ସରକାରୀ କର୍ମଚାରୀ ଦଳ, ରାଜନୈତିକ ଦଳର ନେତା, ସଂପୃକ୍ତ ବିଧାନ ସଭା ସଦସ୍ୟ ଓ ସାଧାରଣ ବନ୍ୟାଞ୍ଚଳକୁ ଚୂଡ଼ା, ଗୁଡ଼ଲ, ଲୁଗା, ଦିଆସିଲି, ଚଣା, କିରାସିନ ଆଦି ବାଉଳ ସରଞ୍ଜାମ ଧରି ଲଞ୍ଚରେ ଧାଇଁଲେ । କେତେକ ବେସରକାରୀ ସ୍ୱେଚ୍ଛାସେବକ ଅନୁଷ୍ଠାନ ଓ ସ୍କୁଲ୍ କଲେଜର ଛାତ୍ର ମଧ୍ୟ ଘଟଣାସ୍ଥଳକୁ ଯାଇ ଅସହାୟ ଲୋକଙ୍କର କାତର କ୍ଷୁଧା-ତୃଷାର ମେଣ୍ଟଣ ଓ ଅଶ୍ରୁବିମୋଚନରେ ସାହାଯ୍ୟ କରିଥିଲେ ।

ବନ୍ୟାପ୍ଳାବିତ ଅଞ୍ଚଳର ଦୁଃଖ ଦୁର୍ଦ୍ଦଶା ଯାହା ଦେଖାଗଲା ତାହା ବର୍ଣ୍ଣନ କଲେ ଯେକୌଣସି ସହୃଦୟ ବ୍ୟକ୍ତିର ହୃଦ ବିଦୀର୍ଣ୍ଣ ହୋଇଯିବ । ଘାଇ ଭାଙ୍ଗି ଦେବୀ ନଦୀର ବିପୁଳ ଜଳରାଶି ଯେତେବେଳେ ଭୀମ ଗର୍ଜ୍ଜନ କରି ସିମଳଦା, ତରଡ଼ପଡ଼ା ଆଦି ଗ୍ରାମରେ ପଶିବାକୁ ଲାଗିଲା ସେତେବେଳେ ବନ୍ଧ ଉପରେ ଆଶ୍ରୟ ନେଇଥିବା ବାଉଳ ଲୋକେ ସହସା ଚିତ୍କାର କରି ଉଠିଲେ ।

ଗୃହର ମୋହ ଛାଡ଼ି ନ ପାରି ଯେଉଁ କେତେକ ଲୋକ ଗ୍ରାମ ମଧ୍ୟରେ ରହି ଯାଇଥିଲେ ସେମାନେ ୧୦ । ୧୨ଫୁଟ ଉଚ୍ଚରେ ପାଣି ମାଡ଼ି ଆସୁଥିବା ଦେଖି ହଠାତ୍ କୌଣସି ଉପାୟ ନ ପାଇ ଘର ଚାଳ ଉପରେ ବା କୌଣସି ବୃକ୍ଷ ଡାଳରେ ଆଶ୍ରୟ ନେଇ ଆତ୍ମରକ୍ଷା



ପାଇଁ କରୁଣ ଚିତ୍କାର କଲେ । ସ୍ରୋତର ବେଗ ଏତେ ପ୍ରଖର ଥିଲା ଯେ ଗୃହ ଗୃହ ଘାଇ ମୁହାଁ ପ୍ରାୟ ହଜାର ଫୁଟ ଯାଏ ମେଲହୋଇ ସିମଳଦା ଓ ଚଉଡ଼ାପଡ଼ା ଗ୍ରାମ ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହେବାକୁ ବସିଲା ଓ ତଳକୁ ଥିବା ଦେବୀ-କୁଶଭଦ୍ରା ଅନ୍ତର୍ଗତ କଟକ-ପୁରୀ ଜିଲ୍ଲାର ଗୃହଶତ ବର୍ଗମାଇଲ ବ୍ୟାପୀ ପ୍ରାୟ ୭୦ ଖଣ୍ଡି ଗ୍ରାମ ଜଳମଗ୍ନ ହୋଇଗଲା । ଫୁଲନଖର-ମାଧବ ରାସ୍ତା ସୁନ୍ଦରଗ୍ରାମଠାରୁ ତଳକୁ ପ୍ରାୟ ବାରମାଇଲ ଯାଏ ବହୁ ସ୍ଥାନରେ କଟି ଜଳରାଶି ମଧ୍ୟରେ ବୁଡ଼ି ରହିଲା । କଣ୍ଟାପଡ଼ା ଡାକବଙ୍ଗଳାରେ ଓ ମଟିରେ ମଟିରେ ଉଚ୍ଚସ୍ଥାନରେ ଅସହାୟ ଜନତା ଆଶ୍ରୟ ନେଉଥିବାର

ଦେଖାଗଲା । ବହୁ ଗୋରୁ, ଛେଳି, ମେଣ୍ଢା, କୁକୁଡ଼ା ଆଦି ଗୃହପାଳିତ ପଶୁପକ୍ଷୀ ଭାସିଗଲେ । ସିମଳଦା ଗ୍ରାମର କେତେକ ଲୋକ ମଧ୍ୟ ଭାସି ଯାଇଥିଲେ ।

ଏଣେ ସିମଳଦା ଘାଇର ଉଭୟ ପାର୍ଶ୍ୱରେ ବିଶେଷ କରି ଗୋବିନ୍ଦପୁରଠାରୁ ସିମଳଦା ଯାଏ, ଖର ଢାକରରେ ବହୁଲୋକ ବନ୍ଧ ଉପରେ ଆଶ୍ରୟ ନେଇଥାଆନ୍ତି । ଆସନ୍ନପ୍ରସବା କେତେକ ସ୍ତ୍ରୀଲୋକ ଏ ନଗ୍ନ ଜୀବନର ପ୍ରସବ-ବେଦନା ଅନୁଭବ କରୁଥିବାର ଓ କେତେକ ସନ୍ତାନ ପ୍ରସବ କରିଥିବାର କରୁଣ ଦୃଶ୍ୟ ଦେଖିବାକୁ ମିଳୁଥାଏ । ସାହାଯ୍ୟକାରୀ ସ୍ୱେଚ୍ଛାସେବକଦଳ ଚୁଡ଼ା, ମୁଢ଼ି ବାଣ୍ଟିବା-ବେଳେ ବୁଇଦାନକୁ ଝୁଙ୍କି ବୁଭୁକ୍ଷୁ ରହିଥିବା ଲୋକ ଯେପରି ଛଡ଼ା-ଛଡ଼ି ହେଉଥାଆନ୍ତି ତାହା ଦେଖିଲେ ଧୈର୍ଯ୍ୟଚ୍ୟୁତି ଘଟୁଥାଏ । ବନ୍ଧ ଉପରେ ଥିବା ଧନୀ, ନିର୍ଦ୍ଧନ, କୁଳୀନ, ଅକୁଳୀନ ସମସ୍ତଙ୍କର ଏକ ଦଶା । ବନ୍ୟାଜଳହିଁ ସେମାନଙ୍କର ପାନୀୟ, ଦୁର୍ବାଶୋଭିତ ବନ୍ଧୁର ଧରଣୀବକ୍ଷ ସେମାନଙ୍କର ଶଯ୍ୟା ଓ ମୁକ୍ତାକାଶ ସେମାନଙ୍କର ମସ୍ତକୋପରି ଆଚ୍ଛାଦନ ହୋଇଥାଏ ।

ସରକାରଙ୍କ ପକ୍ଷରୁ ମୋଟର ବୋଟ୍ ଓ ଡଙ୍ଗା ପଠାଯାଇ ସ୍ରୋତ କବଳରେ ପଡ଼ିଥିବା ନିଭୃତ ଗ୍ରାମର ଲୋକଙ୍କୁ ଛାତ, ଗଛ ଓ ଘରଚାଳ ଉପରୁ ଅସହାୟ ଅବସ୍ଥାରେ ଉଦ୍ଧାର କରାଗଲା । କେତେକ ବୃକ୍ଷ ମନୁଷ୍ୟ ଓ ବିଷଧର ସର୍ପଙ୍କର ଏକତ୍ର ବାସସ୍ଥଳ ହୋଇଥିଲା । ପ୍ରକୃତିର ଉଚ୍ଛୃଙ୍ଖଳତାରେ ସେମାନେ ନିଜର ସ୍ୱାଭାବିକ ପ୍ରବୃତ୍ତି ଭୁଲି ମନ୍ଦବୃତ୍ତିର ଆଶ୍ରୟ ନେଇଥିଲେ ପରି ମନେ ହେଉଥିଲା । କେତେକ ସ୍ଥଳରେ ସ୍ରୋତମୁଖରେ ପଡ଼ି ଲୋକଙ୍କର 'ବୁଡ଼ିଗଲୁ, ରକ୍ଷାକର' ଡାକ ଶୁଭୁଥିଲା । ଏହିପରି ଅବସ୍ଥାରେ ଅତି ଦୁଃସାହସିକତାର ସହିତ ସେମାନଙ୍କୁ ଉଦ୍ଧାର କରାଯାଇଥିଲା । ଗୋବିନ୍ଦପୁର,

ସୁନ୍ଦର ଗ୍ରାମ ଆଦି ବିଭିନ୍ନ ସ୍ଥଳରେ ସାହାଯ୍ୟ ବଣ୍ଟନକେନ୍ଦ୍ର, ଖୋଲାଯାଇ ବନ୍ୟା ଲୋକଙ୍କୁ ସରକାରଙ୍କ ପକ୍ଷରୁ ଖାଦ୍ୟବସ୍ତ୍ରାଦି ଯୋଗାଇ ଦିଆଯାଇଥିଲା ।

ବନ୍ୟା ଗଲା । ପୂର୍ଣ୍ଣିମା ନିକଟ ହୋଇଥିବାରୁ ବନ୍ୟାଜଳ ନିଷ୍କାସିତ ହେବାରେ ତିନି ଦିନ ଡେରି ହୋଇଗଲା । ସରକାରଙ୍କ ପକ୍ଷରୁ ବନ୍ଧବାଡ଼ କାଟି ଜଳ ନିଷ୍କାସନର ବ୍ୟବସ୍ଥା କରାଗଲା । ଅନେକ ସ୍ଥାନରେ ଦେଖାଗଲା ଜମିର ବିଆଳି, ଶାରଦ ଫସଲ ସମୂଳେ ବିନଷ୍ଟ ହୋଇଯାଇଛି ଓ ବହୁ ପାନବରଜ ମଧ୍ୟ ପଚି ନଷ୍ଟ ହୋଇଯାଇଛି । କେଉଁଠାରେ ଜମି ବାଲିଚର ହୋଇଛି ତ କେଉଁଠାରେ ଅଣ୍ଟାଏ ବାଲିର ପଟୁମାଟି ଫସଲକୁ ପୋତି ପକାଇଛି । କେଉଁଠାରେ ପୋଖରୀ ଖୋଳ ହୋଇଯାଇଛି ତ କେଉଁଠାରେ ବାଲିକାନ୍ଥ ଠିଆ ହୋଇଛି ।। ସପ୍ତାହକ ତଳେ ସୁନେଲି ଶସ୍ୟକ୍ଷେତ୍ର ଓ ସବୁଜ ଧାନ କିଆରି ଯେଉଁଠାରେ ପବନ ସହ ଲୁଚକାଳି ଖେଳି କୃଷକ ମନରେ ସୁନେଲି କୁଆଁରୀ ପୁନେଇଁ ଓ ମଦଭରା ଦୋଳପର୍ବର ରଙ୍ଗିନ୍ ଛବି ଅଙ୍କିଦେଉଥିଲା, ଆଜି ତାହା ଅଟ୍ଟହାସ୍ୟ କରି ଖେଙ୍କାର ଗୋଡ଼ାଉଛି ।। କେତେକ ସ୍ଥାନରେ ପୟୋଦାୟିନୀ ଗୋ-ସମ୍ପଦ ସଲିଳ ସମାଧି ଲଭି ଗୃହାଳକୁ ପୂତିଗନ୍ଧମୟ ଶ୍ମଶାନରେ ପରିଣତ କରିଛନ୍ତି । ହାୟରେ ଲୀଳାମୟୀ ପ୍ରକୃତି !! ରଜାକୁ ରଙ୍କ ଓ ଗୃହକୁ ଶ୍ମଶାନରେ ପରିଣତ କରିବା ପ୍ରକ୍ରିୟା ତୋର ଅଦ୍ଭୁତ ! !

୧୯୫୫ର ବନ୍ୟାରେ ଏହାପରି ଦେବୀ, ବିଲ୍ଅଖାଇ, କୁଶଭଦ୍ରା, ଚିତ୍ରୋତ୍ପଳା, ବିରୂପା, ଲୁଣା, ବ୍ରାହ୍ମଣୀ, ବୈତରଣୀ, ସାଳନ୍ଦୀ, ବୁଢ଼ାବଳଙ୍ଗ, ଖରସ୍ରୋତା ଆଦି ନଦୀମାନଙ୍କରେ ପ୍ରାୟ ଅତି ୧୦ଟି ଯାଏ ଭଙ୍ଗ ଘଟିଲା, ପୁରୀ ଓ ବାଲେଶ୍ୱର ଜିଲ୍ଲାର ବହୁ କ୍ଷତି ସାଧନ କରିଥିଲା ।

ଏକକାଳୀନ ଏଭଳି ବ୍ୟାପକ ଜଳବଢ଼ି ଓ ଧ୍ୱଂସସାଧନ ଓଡ଼ିଶାରେ କେବେ ଦେଖାଦେଇ ନ ଥିଲା । ବନ୍ୟାକ୍ଳିଷ୍ଟ ନିଃସ୍ୱ ଲୋକଙ୍କୁ ସରକାର ଖାଦ୍ୟ, ବସ୍ତ୍ର, ଗୃହୋପକରଣ ଆଦି, ସାହାଯ୍ୟ ଦେବା ସଙ୍ଗେ ସଙ୍ଗେ ହଇଜା, ଟାଇଫଏଡ଼୍ ଆଦି ସଂକ୍ରାମକ ରୋଗ ନ ବ୍ୟାପିବା ପାଇଁ ସ୍ୱାସ୍ଥ୍ୟବିଭାଗ ଜରିଆରେ ପ୍ରତିଷେଧକ ବ୍ୟବସ୍ଥା କରିଥିଲେ । ଯେଉଁମାନଙ୍କର ଗୃହ ଭାସିଯାଇଥିଲା ବା ଭାଙ୍ଗି ଯାଇଥିଲା ସେମାନଙ୍କୁ ଗୃହ-ନିର୍ମାଣପାଇଁ ଟଙ୍କା ଋଣ ଓ କ୍ଷତିଗ୍ରସ୍ତ କୃଷକମାନଙ୍କୁ ବିହନ, ସାର ଓ କୃଷିଋଣ ଯୋଗାଇ ଦିଆଯାଇଥିଲା ।

## ପ୍ରଶ୍ନ

୧ । (କ) ୧୯୫୯ ବନ୍ୟା ପୂର୍ବରୁ ଓଡ଼ିଶାର ବନ୍ୟାବିଧ୍ୱସ୍ତ ଅଞ୍ଚଳର ଏକ ସଂକ୍ଷିପ୍ତ ବିବରଣୀ ଦିଅ ।

(ଖ) ସିମଳଦା ବନ୍ୟାଞ୍ଚଳର କରୁଣ ଦୃଶ୍ୟ ବର୍ଣ୍ଣନ କରି ବିଦେଶସ୍ଥ ବନ୍ଧୁଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖ ।

(ଗ) ସିମଳଦା ବନ୍ୟାବିପନ୍ନ ଲୋକଙ୍କୁ କି ପ୍ରକାର ସରକାରୀ ସାହାଯ୍ୟ ଦିଆହୋଇଥିଲା ବର୍ଣ୍ଣନ କର ।

୨ । ଶବ୍ଦାର୍ଥ ଲିଖ—ହରିଶିରୀ, ସହୃଦୟ, ବିପୁଳ, ଭୀମ, ବୁଭୁକ୍ଷୁ, ବନ୍ଧୁର, ଆଚ୍ଛାଦନ, ଆସନ୍ନପ୍ରସବା, ସୌନ୍ଦର୍ଯ୍ୟ, ଉଚ୍ଛୃଙ୍ଖଳତା, ମୁକ୍ତବୃତ୍ତି, ଦୁଃସାହସିକ, ମଦଭରା ଓ ସଳଳସମାଧି ।

୩ । ଶବ୍ଦଗୁଡ଼ିକୁ ନେଇ ବାକ୍ୟ ଗଠନ କର—ଅଗ୍ରୀନଳ, ଭାତହାଣ୍ଡି, କ୍ଷୟକ୍ଷତି, ଆଶଙ୍କା, ନିଃସ୍ୱ ।

୪ । "ସମ୍ବାହକ ତଳେ ସୁନେଲି ଶସ୍ୟକ୍ଷେତ୍ର·········ଖେଳାର ଘୋଡ଼ାକରୁଛି"—ଭାବାର୍ଥ ଲେଖ ।

---

# ଅସ୍ତ୍ରଦାନ

ବହୁ ପୂର୍ବକାଳେ ସ୍ୱର୍ଗପୁରେ ଲାଗି-
ଥିଲା ଥରେ ଯୁଦ୍ଧ ଘୋର,
ଦେବ ଏକପକ୍ଷେ ଅପକ୍ଷେ ଦାନବ
କମ୍ପୁଥିଲା ତିନିପୁର । ୧ ।

ତ୍ୱଷ୍ଟାମୁନି-ପୁତ୍ର— ବୃତ୍ରାସୁର ଦମ୍ଭେ
ଭାଙ୍ଗୁଥିଲା ଦେବ ଠାଣି,
ଅସୁର ବାଣରେ ଶତଧା ବିଦୀର୍ଣ୍ଣ
ହେଉଥିଲା ସୁର-ବାଣୀ । ୨ ।

ଦେବରାଜଙ୍କର ଅଶନି ଛୁଟିଲା
ସୁରଙ୍କ ଚରମ ଅସ୍ତ୍ର,
ବୃତ୍ରବାଣ କିନ୍ତୁ ଖଣ୍ଡିଲା ତାହାକୁ
ଦେବେ ହୋଇଲେ ପରାସ୍ତ । ୩ ।

ଛତ୍ରଭଙ୍ଗ ହୋଇ ପଳାୟନ କଲେ
ଦେବଗଣ ଏଣେ ତେଣେ,
ଅମରାବତୀରେ ଦୈତ୍ୟଙ୍କ ତାଣ୍ଡବ
ଖେଳିଗଲା ପ୍ରତି କୋଣେ । ୪ ।

ନନ୍ଦନ କାନନ ହତଶିରୀ ହେଲା
ଲୁଣ୍ଠିତ ସୁରେନ୍ଦ୍ର ପୁରୀ,
ମନ୍ଦାକିନୀ ହେଲା କଳୁଷିତା, ଗଲା
ଦେବତାଙ୍କ ମଥାଶୂଳ । ୫ ।

ମିଳି ସୁରଗଣ ସୁରଗୁରୁ ପାଶେ
କରିଲେ ଉପାୟ ଚିନ୍ତା,
"ବିଶ୍ୱକର୍ମା ବିଷ୍ଣୁ— ପାଶେ ଜଣାଇଲେ
ତୁଟିବ ବୃତ୍ର ଅହନ୍ତା ।" ୬ ।
ଏହା ପାଇଁ ଦେବେ ଚଳିଲେ ସତ୍ୱରେ
ଦୁଃଖହର ହର ପାଶେ,
ଶୁଣିଣ ଗୁହାରି ଗିରିଜା ଶ୍ରୀହରି
କହନ୍ତି ସୁର ଉଲ୍ଲାସେ । ୭ ।
"ମରତେ ଭରତେ ହିମାଦ୍ରି ଉତ୍ସଙ୍ଗେ
ରହିଛନ୍ତି ତପୋମଗ୍ନ,
ମହର୍ଷି ଅଥର୍ବା— ସୁଯୋଗ୍ୟ ସନ୍ତାନ
ଦଧୀଚି ତାହାଙ୍କ ନାମ । ୮ ।
ମର୍ତ୍ତ୍ୟ ଦେହ ବହି ଯାପୁଛନ୍ତି ସେହି
ଦୁର୍ଲ୍ଲଭ ଦିବ୍ୟ ଜୀବନ,
କଠୋର ତପସ୍ୟା ସୃଜିଛି ତାଙ୍କର
ଅସୀମ ଶକତି, ପୁଣ୍ୟ । ୯ ।
ତାଙ୍କର ଅସ୍ଥିରେ ହୋଇବ ନିର୍ମିତ
ଯେବେ ଏକ ବଜ୍ର ବାଣ,
ସହସ୍ର କୁଳିଶ ହେବ ଊଣା ତାହା
ନେବ ଧ୍ରୁବ ବୃତ୍ର ପ୍ରାଣ ।",୧୦ ।
ଏହା ଶୁଣି ଦେବେ ଚଳିଲେ ସେଠାରୁ
ବୁଡ଼ିଲେ ଚିନ୍ତା-ସାଗରେ,
କିପରି ପାଇବେ ଦଧୀଚିଙ୍କ ଅସ୍ଥି
ବୁଦ୍ଧି କାହାରି ନ ସ୍ଫୁରେ । ୧୧ ।

"ଏକ ଦାନବର ନେବାପାଇଁ ପ୍ରାଣ
ଯିବ ମୂଳଶ୍ରେଷ୍ଠ ଜୀବ,
ଅସ୍ଥି ଭିକ୍ଷା ଛଡ଼ା ଅନ୍ୟ ପନ୍ଥା ନାହିଁ
ଯେଣୁ ହତ୍ୟା ଅସମ୍ଭବ । ୧୨ ।
ଭିକ୍ଷା କିନ୍ତୁ ତାହା ପ୍ରାଣଭିକ୍ଷା, ପୁଣି
ସାଧାରଣ ପ୍ରାଣୁଁ ବଳି,
ଯେଣୁ ତା ନିରତ ବିଭୁପଦେ ରତ
ନିତ୍ୟ ବିଭୁ ବାସସ୍ଥଳୀ । ୧୩ ।
ଏମନ୍ତ ପରାଣ ଥିବା କି କାରଣ
ମାଗିବେ ହୋଇ ନିଷ୍ଠୁର,"
ଏହିରୂପେ ଭାବି ହୃଦ ଗଲା ଦ୍ରବି
ସରବ ଦେବତାଙ୍କର । ୧୪ ।
ଏହିରୂପେ ସ୍ୱାର୍ଥ ପରାର୍ଥ ମଧ୍ୟରେ
ଲାଗିଲା ଦେବଙ୍କ କଳି,
ମାତ୍ର ନିସ୍ୱାମକ ସ୍ୱାର୍ଥର ତାଡ଼ନା
ଠାଣପଣେ ଗଲା ବଳି । ୧୫ ।
ସ୍ଥିର କଲେ ଶେଷେ ଦେବେ, ଦଧୀଚିଙ୍କୁ
ମାଗିବେ ଅସ୍ଥିର ଦାନ,
ଚଳିଲେ ବହନ ଦଧୀଚି ଆଶ୍ରମ
ବାଞ୍ଛି ହେବେ ପୂର୍ଣ୍ଣକାମ । ୧୬ ।
ପହଞ୍ଚି ଆଶ୍ରମେ ତପୋମଗ୍ନ ଋଷି
ଦଧୀଚିଙ୍କ ପାଶେ ଯାଇ,
ହେଲେ ଠିଆ ସୁରେ ବଚନ ନ ସ୍ଫୁରେ
ମାଗିବେ ସାହସ କାହିଁ ? । ୧୭ ।

ଧ୍ୟାନ ଭାଙ୍ଗି ଖୋଲି ନୟନ ଦଧୀଚି
ସମ୍ବର୍ଦ୍ଧିଲେ ଦେବଗଣେ,
ଦେଇଣ ଆସନ ପୁଚ୍ଛିଲେ, "ଆଶ୍ରମ
ଆସିଛନ୍ତି କି କାରଣେ" । ୧୮ ।

ବୋଇଲେ ସୁରେନ୍ଦ୍ର ଆଜି ମୁନି ଇନ୍ଦ୍ର,
ସ୍ୱର୍ଗ ଶାସେ ବୃତ୍ରାସୁର,
ବାସ୍ତୁହରା ଦେବେ ଭୟେ ଏଣେ ତେଣେ
ବୁଲନ୍ତି ହୋଇ ଅସ୍ଥିର । ୧୯ ।



ବୋଲି ଏହା ଇନ୍ଦ୍ର ରହନ୍ତେ ନୀରବ
କହନ୍ତି ଦଧୀଚି ଦୁଃଖେ,
"କେବେ ନାହିଁ ବୃତ୍ର କିଛି ମୋ ଅନିଷ୍ଟ
କେମନ୍ତେ ଯିବି ତା ବିପକ୍ଷେ ?" । ୨୦ ।

ଧୀରେ ପୁରନ୍ଦର ବୋଲିଲେ ସମ୍ଭ୍ରମେ
"ପରମେଶଙ୍କ ସନ୍ଦେଶ,
ଆପଣଙ୍କ ଅସ୍ଥି— ନିର୍ମିତ ବଜ୍ରହିଁ
କରିବ ବୃତ୍ରେ ବିନାଶ ।" । ୨୧ ।

ଶୁଣି ତପୋନିଧି ହରଷେ ପ୍ରବୋଧି
ବୋଇଲେ, "ସୌଭାଗ୍ୟ ମୋର,
ଦେବକାର୍ଯ୍ୟେ ଲାଗି ଯଦି ଉପକାର
କରେ ଏ ମର ଶରୀର । ୨୨ ।

ମାଟିର ଏ ଘଟ ମିଶିବ ମାଟିରେ
ନାହିଁ ଏଥିରେ ସନ୍ଦେହ,
ପର ଉପକାରେ ଲାଗି ଛୁଟିଲେ ତା
ହୁଏ ସିନା ମଧୁମୟ ।" । ୨୩ ।

ଏହା କହି ମୁନି ସମାଧିସ୍ଥ ହୋଇ
ଛଡ଼ାଇଲେ ପିଣ୍ଡୁଁ ପ୍ରାଣ,
ବନ୍ୟ ଗାଭୀ ଆସି ଗୃଟିଲେ ଶରୀର
କରିଲେ ମାଂସ ଭକ୍ଷଣ । ୨୪ ।

ନେଇ ଅସ୍ଥି ଦେବେ ବିଶ୍ୱକର୍ମା ହସ୍ତେ
କଲେ ଅଶନି ନିର୍ମାଣ,
ଇନ୍ଦ୍ର ପୁନର୍ବାର ତେଣେ ଅସ୍ଥି-ବଜ୍ର
ନେଲେ ବୃତ୍ରାସୁର ପ୍ରାଣ । ୨୫ ।

ଦଧୀଚିଙ୍କ ମୃତ ଅସ୍ଥିଦାନେ ଦେବେ
ଫେରି ପାଇଲେ ସ୍ୱଧାମ,
କାଳଗର୍ଭେ ସବୁ ଲୁଚିଲାଣି କିନ୍ତୁ
ରହିଛି ଦଧୀଚି ନାମ । ୨୬ ।

ଧନ୍ୟ ତପୋଧନ ! ଜେତେ ମହାପ୍ରାଣ
ତବ ପୁଣ୍ୟଗାଥା-ତ୍ୟାଗ,
ଥିବ ଯେତେ ଦିନ ମର୍ତ୍ତ୍ୟେ ଦାନ, ଧର୍ମ
ରହିବ ତବ ନାଁ ଆଗ । ୨୭ ।

## ପ୍ରଶ୍ନ

୧ । (କ) ବୃତ୍ର କିଏ ? ଅସୁରଙ୍କ ଦ୍ୱାରା ସ୍ୱର୍ଗପୁର କିପରି କ୍ଷତଗ୍ରସ୍ତ ହୋଇଥିଲା ?

(ଖ) ସ୍ୱର୍ଗପୁର ଫେରି ପାଇବାକୁ ଦେବତାମାନେ କି ଉପାୟ ଅବଲମ୍ବନ କରିଥିଲେ ?

(ଗ) ଦଧୀଚିଙ୍କୁ ଶ୍ରେଷ୍ଠଦାନୀ ବୋଲି କାହିଁକି କୁହାଯାଏ ?

୨ । ପ୍ରତିଶବ୍ଦ କୁହ:—ଦେବତା, ଇନ୍ଦ୍ର, ବିଷ୍ଣୁ, ବଜ୍ର, ଅସୁର, ମୃତ୍ୟୁ ।

୩ । ଅର୍ଥ କୁହ:—ଦମ୍ଭ, ଛତ୍ରଭଙ୍ଗ, ତାଣ୍ଡବ, ଅହଙ୍କାର, ଧ୍ରୁବ, ନନ୍ଦନକାନନ, ନିସ୍ତାମକ, ତାଡ଼ନା, ମନ୍ଦାକିନୀ, ଅମରାବତୀ, ଉଦ୍ଦେଶ, ବାସୁଦେବ, ସମାଧିସ୍ଥ ।

୪ । ଦତ୍ତ ଶବ୍ଦଗୁଡ଼ିକର ପଦ ନିର୍ଦ୍ଦେଶ କର ଓ ପ୍ରତ୍ୟେକକୁ ନେଇ ବାକ୍ୟ ଗଢ଼:—ଶତଧା, ସତ୍ୱରେ, ଆନ, ଇନ୍ଦ୍ର, ନିତ୍ୟ, ବହନ, ମୂର୍ତ୍ତିକାମ, ଧ୍ୟାନେ, ସମ୍ବର୍ଦ୍ଧିଲେ, ନ ସ୍ମରେ, ମହାପ୍ରାଣ ।

୫ । ଗଦ୍ୟାନୁବାଦ କର:—

"ମିଳି ସୁରଗଣ .....ତୁଟିବ ବୃତ୍ର ଅହଙ୍କାର ।"

୬ । ଦତ୍ତ ପଦ୍ୟାଂଶ ଦୁଇଟିର ବିଶଦ ବ୍ୟାଖ୍ୟା କର:—

(କ) "ଉପାୟ କିନ୍ତୁ ତାହା .....ନିତ୍ୟ ବନ୍ଧୁ ବାସବଙ୍କ"

(ଖ) "ମାଟିର ଏ ଘଟ......ହୁଏ ଯିନା ମଧୁମୟ ।"

---

# ନବଯୁଗର ବାର୍ତ୍ତାବହ ହୀରାକୁଦ

ମହାନଦୀ କୂଳେ କୂଳେ ସମ୍ବଲପୁରଠାରୁ ୯ ମାଇଲ୍ ଉପରକୁ ଗଲେ ହୀରାକୁଦ ଉପତ୍ୟକା ପଡ଼େ । ପୂର୍ବକାଳରେ ଏଠାରେ ହୀରା ମିଳୁଥିବାରୁ ଏହାର ନାମ ହୀରାକୁଦ ହୋଇଅଛି । କିନ୍ତୁ ବର୍ତ୍ତମାନ ହୀରାକୁଦ ତାହାର ସ୍ୱନାମଧନ୍ୟ ନଦୀବନ୍ଧ ଯୋଜନା ଯୋଗୁ ଓଡ଼ିଶାର ତୀର୍ଥକ୍ଷେତ୍ରରେ ପରିଣତ ହୋଇଅଛି ।

ଯୁକ୍ତରାଷ୍ଟ୍ର ଅମେରିକାର ବିଖ୍ୟାତ ଟେନେସି ନଦୀ ଉପତ୍ୟକା ଯୋଜନା ଅନୁସାରେ ହୀରାକୁଦ ଯୋଜନା ତିଆରି କରାଯାଇଅଛି । ଏହି ଯୋଜନା ଦ୍ୱାରା ଏକ ସଙ୍ଗେ ମହାନଦୀର ବନ୍ୟା ନିୟନ୍ତ୍ରଣ, ଜଳସେଚନ, ବିଦ୍ୟୁତ୍‌ଶକ୍ତି ଉତ୍ପାଦନ, ଦେଶାଭ୍ୟନ୍ତରୀଣ ନୌଚାଳନ ଆଦି ନାନା ଲୋକହିତକର କାର୍ଯ୍ୟ ସାଧିତ ହେବାକୁ ଯାଉଥିବାରୁ ଏହାକୁ 'ହୀରାକୁଦ ବହୁମୁଖୀ ଯୋଜନା' କୁହାଯାଉଛି ।

ଭାରତର ଏହି ସର୍ବବୃହତ୍ ନଦୀ ଉପତ୍ୟକା ଯୋଜନା ତିନୋଟି ପର୍ଯ୍ୟାୟରେ ବିଭକ୍ତ । ପ୍ରଥମତଃ ହୀରାକୁଦ ବନ୍ଧ ନିର୍ମାଣ, ଦ୍ୱିତୀୟତଃ ମହାନଦୀର ସାତକୋଶିଆ ଗଣ୍ଡ ନିକଟରେ ଟିକରପଡ଼ା ବନ୍ଧ ନିର୍ମାଣ ଓ ତୃତୀୟତଃ ନରାଜ ବନ୍ଧ ନିର୍ମାଣ । ମହାନଦୀର ଶଯ୍ୟା ଉପରେ ଏହି ତିନୋଟି ବନ୍ଧ ନିର୍ମାଣ କରି କଟକ ଓ ପୁରୀ ଜିଲ୍ଲାକୁ ବନ୍ୟା ଉପଦ୍ରବରୁ ସମ୍ପୂର୍ଣ୍ଣ ମୁକ୍ତ କରିବା ସଙ୍ଗେ ସଙ୍ଗେ ମରୁଡ଼ିଗ୍ରସ୍ତ ଅଞ୍ଚଳକୁ ନାଳଯୋଗେ ଜଳ ଯୋଗାଇ ଦେଶର ଖାଦ୍ୟ ଶସ୍ୟ ଉତ୍ପାଦନ ବୃଦ୍ଧି କରିବା ତଥା ସୁଲଭ ମୂଲ୍ୟର ଜଳବିଦ୍ୟୁତ୍ ଶକ୍ତି ଉତ୍ପାଦନ କରି ଦେଶର ଶିଳ୍ପସମୃଦ୍ଧି ସାଧନ କରିବାହିଁ ଏ ଯୋଜନାର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ ।

ଏଥିମଧ୍ୟରୁ ହୀରାକୁଦଠାରେ ବନ୍ଧ ନିର୍ମାଣ, ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ଆଦି କାର୍ଯ୍ୟ ବୃହତ୍ତମ । ଏହି କାର୍ଯ୍ୟ ୧୯୪୮ ମସିହାର ପ୍ରାରମ୍ଭରେ ଆରମ୍ଭ ହୋଇ ୧୯୫୬ ମସିହାରେ ଶେଷ ହୋଇଛି । ସର୍ବପ୍ରଥମେ ହୀରାକୁଦ ଜଳଭଣ୍ଡାର ବୁଡ଼ିଅଞ୍ଚଳର ପ୍ରାୟ ଦୁଇଶତ ଗ୍ରାମର ଅଧିବାସୀଙ୍କ ପାଇଁ ଉପଯୁକ୍ତ ଦୂରବର୍ତ୍ତୀ ସ୍ଥାନମାନଙ୍କରେ ପୁନର୍ବସତି କେନ୍ଦ୍ରମାନ ନିର୍ମାଣକରି ସେମାନଙ୍କୁ ଥଇଥାନ କରିବାକୁ ପଡ଼ିଥିଲା । ସଙ୍ଗେ ସଙ୍ଗେ ଏହି ବିରାଟ କାର୍ଯ୍ୟ ଆରମ୍ଭ କରିବା ପାଇଁ ବହୁ ରାସ୍ତା, ଘାଟ, ରେଳପଥ, ଶ୍ରମିକବସତି, ଦୋକାନ ବଜାର, ଡାକ୍ତରଖାନା, ବିଦ୍ୟାଳୟ, ଇଞ୍ଜିନିୟର ଓ ବଡ଼ ବଡ଼ କର୍ମଚାରୀଙ୍କ ଗୃହ ଆଦି ନିର୍ମାଣ କରିବାକୁ ପଡ଼ିଥିଲା ।

ହୀରାକୁଦ ପ୍ରଧାନ ବନ୍ଧ ମହାନଦୀର ଶଯ୍ୟା ଉପରେ ତିଆରି ହୋଇଛି । ଦୁଇ କଡ଼ରେ ଥିବା ଦୁଇଟି ଛୋଟ ପାହାଡ଼କୁ ଏହି ବନ୍ଧ ଉଭୟ ପାର୍ଶ୍ୱରେ ସଂଯୋଗ କରୁଛି । ଏହି ପ୍ରଧାନବନ୍ଧର ବାମ ଓ ଦକ୍ଷିଣ ପଟରେ ୫୨ ଫୁଟ ପ୍ରସ୍ଥ ଓ ୨୦ ଫୁଟ ଉଚ୍ଚତାବିଶିଷ୍ଟ ବତିଶଗୋଟି ଜଳ ନିଷ୍କାସନ ପଥ ( ସ୍ପିଲ୍‌ୱେ ) ଥିବା ଦୁଇଟି ସିମେଣ୍ଟ ଯୋଡ଼ ଢଳାଇ ଅଂଶ ଅଛି । ପ୍ରଧାନ ବନ୍ଧର ଏହି ସିମେଣ୍ଟ ଯୋଡ଼ ଢଳାଇ ଅଂଶଦ୍ୱୟ ମଧ୍ୟରେ ହୀରାକୁଦ ଦ୍ୱୀପ ଉପରେ ଥିବା ଅଂଶଟି ମାଟି, ପଥର ଓ ସିମେଣ୍ଟ ମିଶ୍ରଣରେ ତିଆରି ହୋଇଅଛି । ଏହାକୁ ମାଟିବନ୍ଧ କୁହାଯାଇଛି ଓ ଏହାର ନିର୍ମାଣକୌଶଳ ଏପରି ଯେ ଏଥିରେ ଏକ ପଞ୍ଚମାଂଶ ମାଟି ମିଶିଥିଲେ ମଧ୍ୟ ଏହା ସମ୍ପୂର୍ଣ୍ଣ ସିମେଣ୍ଟ ଢଳାଇ କାର୍ଯ୍ୟପରି ଶକ୍ତ । ବାମ ଜଳନିଷ୍କାସନ ପଥଠାରୁ ବାମ ପାହାଡ଼ ପର୍ଯ୍ୟନ୍ତ ବନ୍ଧର ଅଂଶଟିକ ମଧ୍ୟ ଏହି ପ୍ରକାର ମାଟି ବନ୍ଧ । ଦକ୍ଷିଣ ଜଳନିଷ୍କାସନ ପଥ ବନ୍ଧସଂଲଗ୍ନ ପ୍ରଧାନବନ୍ଧର ଶେଷଅଂଶକୁ ବିଦ୍ୟୁତ୍‌ଶକ୍ତି ଉତ୍ପାଦନକାରୀ ବନ୍ଧ ( ପାୱାରଡ୍ୟାମ୍ )

କୁହାଯାଉଛି । ନଦୀର ସର୍ବନିମ୍ନ ସମତଳରୁ ପ୍ରଧାନ ବନ୍ଧର ଉଚ୍ଚତା ଦୁଇଶହ ଫୁଟ । ଏହି ପ୍ରଧାନ ବନ୍ଧଟି ପ୍ରାୟ ତିନିମାଇଲ ଲମ୍ବ ଓ ଏହାର ହାରାହାରି ଉଚ୍ଚତା ୧୬୦ ଫୁଟ । ଜଳଭଣ୍ଡାର ଉଦ୍‌ବୃତ୍ତ ନିଷ୍କାସନ ପାଇଁ ୧୨ ଫୁଟ ପ୍ରସ୍ଥ ଓ ୨୪ ଫୁଟ ଉଚ୍ଚତାବିଶିଷ୍ଟ ୬୦ ଶଯ୍ୟାପତନ କବାଟ ଏହି ବନ୍ଧ ଉପରେ ନିର୍ମିତ ହୋଇଛି । ସମଗ୍ର ଏସିଆରେ ଏତେଗୁଡ଼ିଏ ଶଯ୍ୟାପତନ କବାଟବିଶିଷ୍ଟ ବନ୍ଧ ଦେଖିବାକୁ ବିରଳ ।



ଏହି ପ୍ରଧାନବନ୍ଧର ଉଭୟ ପାର୍ଶ୍ୱରେ ତେର ମାଇଲ ଲମ୍ବର ଦୁଇଟି ମଧ୍ୟମ ଧରଣର ଉଚ୍ଚତାବିଶିଷ୍ଟ ମାଟିବନ୍ଧ ତିଆରି ହୋଇଛି । ଦକ୍ଷିଣପାର୍ଶ୍ୱ ବନ୍ଧ ପ୍ରାୟ ୭ ମାଇଲ ଲମ୍ବ । ବାମ-ପାର୍ଶ୍ୱରେ ଛଅଟି ଛୋଟ ଛୋଟ ପାହାଡ଼କୁ ବନ୍ଧାଇ ଯେଉଁ ମାଟିବନ୍ଧ ତିଆରି କରାଯାଇଛି ତାହା ଛଅ ମାଇଲ ଲମ୍ବ । ଏହି ବିଶାଳ ହୀରାକୁଦ ବନ୍ଧ ପୃଥିବୀରେ ଦୀର୍ଘତମ ବୋଲି ଖ୍ୟାତି ଅର୍ଜିଛି । ଏହାର ଘନଫଳ ପରିମାଣର ମୃତ୍ତିକା ବିଛାଇଦେଲେ ଉତ୍ତରରେ କାଶ୍ମୀର

ଠାରୁ ଦକ୍ଷିଣରେ କନ୍ୟାକୁମାରୀ ପର୍ଯ୍ୟନ୍ତ ଓ ପଶ୍ଚିମରେ ଅମୃତସହର-ଠାରୁ ପୂର୍ବରେ ଦନ୍ତୁଚଡ଼ ପର୍ଯ୍ୟନ୍ତ ୨୫ ଫୁଟ ପ୍ରସ୍ଥର ଗୋଟିଏ ଦୀର୍ଘ ସଡ଼କ ପଥ ନିର୍ମିତ ହୋଇପାରିବ ।

ଏହି ଦୀର୍ଘ ବନ୍ଧ ଫଳରେ ମହାନଦୀର ଜଳରାଶିକୁ ଅଟକା-ଯାଇ ଯେଉଁ ବିରାଟ ହ୍ରଦ ସମ୍ଭବ ହୋଇଛି ତାହାର କ୍ଷେତ୍ରଫଳ ୧୮୮ ବର୍ଗମାଇଲ ଓ ତାହା ସମଗ୍ର ଏସିଆ ମଧ୍ୟରେ ବୃହତ୍ତମ କୃତ୍ରିମ ହ୍ରଦ । ଏହାର ସମୁଦାୟ ତୀର ରେଖାର ଲମ୍ବ ୪୦୦ ମାଇଲରୁ ଅଧିକ । ଏହି କୃତ୍ରିମ ହ୍ରଦ ମଧ୍ୟରେ ୬୭ ଲକ୍ଷ ଏକର ଫୁଟ ଜଳରାଶି ରହି ପାରିବ, ଯାହାକି ସମଗ୍ର କୋରାପୁଟ ଜିଲ୍ଲା ଉପରେ ଏକଫୁଟ ଉଚ୍ଚ ପାଣି ଠିଆ ହେଲେ ଯେତିକି ହେବ ତାହା ସଙ୍ଗେ ସମାନ । ଏହି ବିପୁଳ ଜଳରାଶି ଅଟକି ରହିବା ଫଳରେ ମହାନଦୀ ତଳ ଅବ-ବାହିକା ଅଞ୍ଚଳରେ ବନ୍ୟା ବିଭୀଷିକା କମି ଯାଇବା ସଙ୍ଗେ ସଙ୍ଗେ ଓଡ଼ିଶାର, ସମ୍ବଲପୁର, ବଲାଙ୍ଗିରପାଟଣା, କଟକ ଓ ପୁରୀ ଜିଲ୍ଲା-ମାନଙ୍କରେ ପ୍ରାୟ ୨୬ ଲକ୍ଷ ଏକର କୃଷିଜମିରେ କେନାଲଯୋଗେ ଜଳସେଚନ ପାଇଁ ବର୍ଷସାରା ଜଳ ମିଳିପାରିବ ।

ଏହି ଜଳଭଣ୍ଡାରର ବାମ ଓ ଦକ୍ଷିଣ ପଟରୁ ଦୁଇଟି ପ୍ରଧାନ କେନାଲ ମଧ୍ୟ ଖୋଲାଯାଇଛି । ଏହି ବାମ କେନାଲ ସମ୍ବଲପୁର ଜିଲ୍ଲାର ଓ ଦକ୍ଷିଣ କେନାଲ ସମ୍ବଲପୁର ଓ ବଲାଙ୍ଗିରପାଟଣା ଜିଲ୍ଲାର ମୋଟ ପ୍ରାୟ ୬ ଲକ୍ଷ ୬୨ ହଜାର ଏକର ଜମିରେ ଜଳସେଚନ କରିବ । ଦକ୍ଷିଣ କେନାଲର ନାମ ବରଗଡ଼ କେନାଲ । ବାମ କେନାଲ ଦ୍ୱାରା ଜଳସେଚିତ ଜମିର ଛଅଗୁଣ ଜମି ଏହାଦ୍ୱାରା ସେଚିତ ହେବ । ଏହି କେନାଲଗୁଡ଼ିକ ଖୋଳା ସରିବା ସଙ୍ଗେ ସଙ୍ଗେ ଜଳସେଚନ ଉପଯୋଗୀ କରାଯାଇଛି ଓ ବର୍ତ୍ତମାନସୁଦ୍ଧା ଏହି କେନାଲଦ୍ୱାରା ସମ୍ବଲପୁର-ବଲାଙ୍ଗିର ଜିଲ୍ଲାର ପ୍ରାୟ ତିନିଲକ୍ଷ

ପଚ୍ଛିଶ ହଜାର ଏକର ଜମିରେ ଜଳସେଚନ କାର୍ଯ୍ୟ ସମ୍ଭବ ହେଲାଣି । ଏହି ପ୍ରଧାନ କେନାଲ୍, ଶାଖାକେନାଲ୍, ଜରନାଳୀ ଆଦି ଯୋଗେ ଖୋଳା ଯାଇଥିବା ଜଳପଥର ଲମ୍ବ ତିନି ହଜାର ମାଇଲ୍ ହେବ ।

ଏତଦ୍ ବ୍ୟତୀତ ଜଳଭଣ୍ଡାରରୁ ୯୫ ଫୁଟ ଉଚ୍ଚରୁ ୭ଟି ବଡ଼ବଡ଼ ନଳ ( ପେନ୍‌ଷ୍ଟକ୍ ) ମଧ୍ୟକୁ ପଡ଼ୁଥିବା ଜଳରାଶି ଦ୍ୱାରା ବିଦ୍ୟୁତ୍ ଟରବାଇନ ଘୂରି ଯେଉଁ ବିଦ୍ୟୁତ୍‌ଶକ୍ତି ଉତ୍ପାଦିତ ହେବ ତାହାର ପରିମାଣ ୨ଲକ୍ଷ ୭୦ ହଜାର କିଲୋୱାଟ୍ ହେବ ଓ ତାହା ଭାରତର ସର୍ବବୃହତ୍ ବିଦ୍ୟୁତ୍‌ଶକ୍ତି ଉତ୍ପାଦନକେନ୍ଦ୍ରରେ ପରିଣତ ହେବ । ବର୍ତ୍ତମାନ ୪ଟି ଟରବାଇନ୍‌ର କାର୍ଯ୍ୟ ଆରମ୍ଭ ହୋଇଛି ଓ ଅବଶିଷ୍ଟ ତିନୋଟି ଭବିଷ୍ୟତରେ ସମ୍ପ୍ରସାରଣ ପାଇଁ ରଖାଯାଇଛି । ଏହି ପ୍ରଧାନ ବନ୍ଧ ବିଦ୍ୟୁତ୍‌ଶକ୍ତି ଉତ୍ପାଦନକେନ୍ଦ୍ରରୁ ଯେଉଁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ହେଉଛି ତାହା ପ୍ରାୟ ୨୦୦ମାଇଲରୁ ଊର୍ଦ୍ଧ୍ୱ ଲମ୍ବ ଉଚ୍ଚ-ଶକ୍ତିସମ୍ପନ୍ନ ବିଦ୍ୟୁତ୍ ପଥ ଯୋଗେ ରାଉରକେଲା ଲୁହା କାରଖାନା, ହୀରାକୁଦ ଆଲୁମିନିୟମ କାରଖାନା, ନୂଆମୁଣ୍ଡି, ବଡ଼ବିଲ ଆଦି ଖଣି ଅଞ୍ଚଳ, ଯୋଡ଼ା ଫେରୋମାଙ୍ଗାନିଜ କାରଖାନା, ରାଜଗାଙ୍ଗପୁର ସିମେଣ୍ଟ କାରଖାନା, ବ୍ରଜରାଜନଗର କାଗଜ କଳ, ଚୌଦ୍ୱାରର ବିଭିନ୍ନ କଳ କାରଖାନା ତଥା ଓଡ଼ିଶାର ଅନ୍ୟାନ୍ୟ ଶିଳ୍ପାଞ୍ଚଳ ଓ ସହର ମଫସଲକୁ ବିଦ୍ୟୁତ୍‌ଶକ୍ତି ଯୋଗାଉଅଛି । ଏଠାରେ ଯେଉଁ ଟରବାଇନ ଓ ବିଦ୍ୟୁତ୍‌ଶକ୍ତି ଉତ୍ପାଦନକାରୀ ଯନ୍ତ୍ର ବସାଯାଇଛି ତାହା ସମଗ୍ର ଏସିଆରେ ତଥା ସୁଦୂର ପୂର୍ବାଞ୍ଚଳ ମଧ୍ୟରେ ସର୍ବବୃହତ୍ । ଏତଦ୍ ବ୍ୟତୀତ ହୀରାକୁଦ ବିଦ୍ୟୁତ୍ ଶକ୍ତିଉତ୍ପାଦନ ବନ୍ଧରୁ ନିଷ୍କାସିତ ଜଳରାଶିକୁ ୯ ମାଇଲ୍ ତଳେ ଚିପ୍ଲିମାଠାରେ ପୁନର୍ବାର କାର୍ଯ୍ୟରେ ଲଗାଇ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରିବା ପାଇଁ ଏକ ଯୋଜନା ବର୍ତ୍ତମାନ କାର୍ଯ୍ୟକାରୀ ହେଉଛି ।

ଏହି ବିଦ୍ୟୁତ୍‌ଶକ୍ତି ଉତ୍ପନ୍ନ ହେବା ସଙ୍ଗେ ସଙ୍ଗେ ତାହା ସମ୍ବଲପୁର ସହରକୁ ଓ ଉତ୍ତରରେ ରାଜଗାଙ୍ଗପୁର ସିମେଣ୍ଟ କାରଖାନାକୁ ଯୋଗାଇ ଦିଆଯାଇଥିଲା । ଏହି ସିମେଣ୍ଟ କାରଖାନା ୧୯୫୨ ମସିହା ଜାନୁଆରୀଠାରୁ ଉତ୍ପାଦନ ଆରମ୍ଭ କରିଥିଲା ଓ ଦୈନିକ ଯେଉଁ ୧୦ ହଜାର ମହଣ ସିମେଣ୍ଟ ଉତ୍ପାଦନ କରୁଥିଲା ତାହା ସମୁଦାୟ ହୀରାକୁଦ ବନ୍ଧ ନିର୍ମାଣ କାର୍ଯ୍ୟପାଇଁ ଯୋଗାଉଥିଲା । ଏହି ହୀରାକୁଦ ବନ୍ଧ ନିର୍ମାଣ କାର୍ଯ୍ୟରେ ସହାୟତା କରିବା ପାଇଁ ୧୯୫୦ ମସିହାରେ ପ୍ରାୟ ୫୬ ଲକ୍ଷ ଟଙ୍କା ବ୍ୟୟରେ ମହାନଦୀ ଉପରେ ଅର୍ଦ୍ଧ ମାଇଲରୁ ଊର୍ଦ୍ଧ୍ୱ ଲମ୍ବର ଯେଉଁ ରେଳରାସ୍ତା ଓ ପୋଲ୍ ଏଠାରେ ନିର୍ମାଣ କରାଯାଇଥିଲା ତାହା ଆଜି କଲିକତାରୁ ବମ୍ବେ ପର୍ଯ୍ୟନ୍ତ ଯାଇଥିବା ଜାତୀୟ ମହାପଥକୁ ବର୍ଷର ସବୁ ସମୟରେ ଯାତାୟାତ ଉପଯୋଗୀ କରି ମହୋପକାର ସାଧନ କରୁଛି । ଏହି ହୀରାକୁଦଯୋଜନା ଯୋଗୁଁ ଏଠାରେ ଏକ ନୂତନ ସହର ଗଢ଼ି ଉଠିଛି । ବନ୍ଧର ବାମପଟେ ହୀରାକୁଦ ଯନ୍ତ୍ରପାତି ତିଆରି ଓ ମରାମତି କାରଖାନା, ହୀରାକୁଦ ଆଲୁମିନିୟମ କାରଖାନା ଓ ହୀରାକୁଦ ପଲିଟେକ୍ନିକ୍ ଓ ଦକ୍ଷିଣପଟେ ନଦୀର ଅପର ପାର୍ଶ୍ୱରେ ଥିବା ବୁର୍ଲାର ଇଞ୍ଜିନିୟରିଂ କଲେଜ ଓ ମେଡ଼ିକାଲ କଲେଜ ଯୋଗୁଁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଶିଳ୍ପ ଓ ବୈଷୟିକ ଶିକ୍ଷାକେନ୍ଦ୍ରରେ ପରିଣତ ହୋଇଛି ।

ଏହିସବୁ ଦୃଷ୍ଟିରୁ ବିଚାର କଲେ ହୀରାକୁଦ ଯେ ଓଡ଼ିଶାକୁ ତଥା ଭାରତକୁ ସୁଜଳା, ସୁଫଳା, ଶସ୍ୟ-ଶ୍ୟାମଳା କରିବାରେ ଏକ ପ୍ରଧାନ ସହାୟକ ଏଥିରେ ସନ୍ଦେହର ଅବକାଶ ନାହିଁ । ବନ୍ୟା ପ୍ରାଦୁର୍ଭାବରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଓଡ଼ିଶାକୁ କୃଷି, ଶିଳ୍ପ, ବାଣିଜ୍ୟ, ଗମନାଗମନ ଆଦି ନାନା ବୈଷୟିକ କ୍ଷେତ୍ରରେ

ଋଦ୍ଧିମନ୍ତ କରି ଗଢ଼ି ଓଡ଼ିଶାରେ ଏକ ନୂତନ ଯୁଗ ଆଣିଦେବା ପାଇଁ ହୀରାକୁଦର ଆବିର୍ଭାବ । ଓଡ଼ିଶାରେ ଏହି ନୂତନ ଯୁଗର ବାର୍ତ୍ତାବହ ଅଚିରେ ତାହାର ନାମ ସାର୍ଥକ କରୁ ଏହାହିଁ କାମନା ।

## ପ୍ରଶ୍ନ

୧ । ହୀରାକୁଦ ଯୋଜନାକୁ ବହୁମୁଖୀ ଯୋଜନା କାହିଁକି କୁହା-ଯାଉଛି ।

୨ । ପ୍ରଧାନ ବନ୍ଧର ନିର୍ମାଣଭଙ୍ଗୀ ଓ ନିର୍ମାଣ ବୈଶିଷ୍ଟ୍ୟ ସମ୍ବନ୍ଧରେ ଯାହା ଜାଣ ଲେଖ

୩ । ଏହାର ଜଳସେଚନ କିପରି କାର୍ଯ୍ୟକାରୀ ହେଉଛି ?

୪ । ଏଥିରୁ ଉତ୍ପନ୍ନ ବିଦ୍ୟୁତ୍‌ଶକ୍ତି ବର୍ତ୍ତମାନ କେଉଁ ସ୍ଥାନରେ ଓ କେଉଁ କେଉଁ ସ୍ଥାନକୁ ଯୋଗାଇ ଦିଆଯାଉଛି ?

୫ । ଶବ୍ଦାର୍ଥ କୁହ :—ଅବବାହିକା, ଉପତ୍ୟକା, ପର୍ଯ୍ୟାପ୍ତ, ଅଭିଯାନ, ଭାଣ୍ଡାର, ବଣ୍ଟିପିକା, ପରିମାଣ, ଅବକାଶ, ଋଦ୍ଧିମନ୍ତ, ବାର୍ତ୍ତାବହ ।

୬ । ବିଶେଷ୍ୟକୁ ବିଶେଷଣରେ ଓ ବିଶେଷଣକୁ ବିଶେଷ୍ୟରେ ପରିଣତ କରି ବାକ୍ୟ ଗଢ଼ :—
ସାଧିତ, ବହୁମୁଖୀ, ଉପଦ୍ରବ, ସମୃଦ୍ଧି, ଉତ୍ପାଦନ, ସଂଯୋଗ, ବୁଭୁକ୍ଷା, ନିଷ୍କାସନ, ସେଚନ, ସମ୍ଭବ, କାର୍ଯ୍ୟକାରିତା, ସହାନ୍ତୁ, ପ୍ରାଦୁର୍ଭାବ ଓ ସାର୍ଥକ ।

୭ । ବିପରୀତାର୍ଥବୋଧକ ଶବ୍ଦ କୁହ:—ଶକ୍ତ, କୃତ୍ରିମ, ଉପଯୋଗୀ ଊର୍ଦ୍ଧ୍ୱ, ଜାତୀୟ, ଆବିର୍ଭାବ ଓ ଅଚିରେ ।

୮ । ଭାବାର୍ଥ ଲେଖ:—"ଓଡ଼ିଶାରେ ଏହି ନୂତନ···ଏହାହିଁ କାମନା ।"

# ଭେଙ୍କଟ ରମଣ

ଭାରତରେ ଦୁଇଟି ରମଣ ବିଶେଷ ଜଣାଶୁଣା । ଗୋଟିଏ ହେଉଛନ୍ତି ଦାକ୍ଷିଣାତ୍ୟର ସନ୍ଥ ରମଣ ମହର୍ଷି ଓ ଅନ୍ୟଟି ଏ ଯୁଗର ଶ୍ରେଷ୍ଠ ବୈଜ୍ଞାନିକ ସାର୍ ଚନ୍ଦ୍ରଶେଖର ଭେଙ୍କଟ ରମଣ । ଏହି ବୈଜ୍ଞାନିକ ମହତ୍ତମନୀଷୀ ରମଣ ୧୮୮୮ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସ ୭ ତାରିଖରେ ଦାକ୍ଷିଣାତ୍ୟର ଇତିହାସପ୍ରସିଦ୍ଧ ତ୍ରିଚିନାପଲ୍ଲୀ ନଗରୀରେ ଏକ କୁଳୀନ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ଚନ୍ଦ୍ରଶେଖର ଅୟାର ତ୍ରିଚିନାପଲ୍ଲୀର ଏକ ସ୍କୁଲରେ ଜଣେ ଶିକ୍ଷକ ଥିଲେ ଓ ପରେ ସ୍ୱୀୟ ଅଧ୍ୟବସାୟ ଗୁଣରେ ଓ୍ୱାଲ୍‌ଟିୟର୍‌ରେ ଏକ କଲେଜର ଅଧ୍ୟାପକ ହୋଇଥିଲେ ।



ଏହି ଓ୍ୱାଲ୍‌ଟିୟର୍‌ରେ ରମଣଙ୍କର ବିଦ୍ୟାଳୟ ଜୀବନ ଆରମ୍ଭ ହୋଇଥିଲା । ଅତି ଅଳ୍ପ ସମୟ ମଧ୍ୟରେ ସେ ବିଦ୍ୟାଳୟର ସମସ୍ତ ପାଠ୍ୟକ୍ରମରେ ଅସାଧାରଣ ବ୍ୟୁତ୍ପତ୍ତି ଲାଭକରିଥିଲେ । ପ୍ରଥମରୁ ବିଜ୍ଞାନ ଅଡ଼କୁ ତାଙ୍କର ବିଶେଷ ଅନ୍ତର ପ୍ରକାଶ ପାଇଥିଲା ।

ଓ୍ୟାଲଟିୟର୍ ହିନ୍ଦୁ କଲେଜରୁ ଆଇ. ଏ. ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ସେ ମାନ୍ଦ୍ରାଜ ସହରର ପ୍ରେସି-ଡେନ୍ସି କଲେଜରେ ବି. ଏ. ଶ୍ରେଣୀରେ ନାମ ଲେଖାଇଲେ । ସେତେବେଳେ ତାଙ୍କ ବୟସ ମାତ୍ର ତେର ବର୍ଷ ଥିଲା । ଅନ୍ୟ-ମାନଙ୍କ ତୁଳନାରେ ସେ ଆକାରରେ ଗ୍ରେଟ ଥିଲେ । ଏପରିକି ଇଂରାଜୀ ଅଧ୍ୟାପକ ଶ୍ରେଣୀରେ ପ୍ରବେଶ କରି ତାଙ୍କୁ କୌଣସି ବାଳକ ଭୁଲକ୍ରମେ ପଶିଆସିଛି ବୋଲି ଜ୍ଞାନକରିଥିବେ, ଓ "ତୁମେ ଏ ଶ୍ରେଣୀକୁ କାହିଁକି ଆସିଛ" ବୋଲି ପଚାରିଥିଲେ । ସହପାଠୀବୃନ୍ଦ ରମଣଙ୍କୁ ଗ୍ରେଟିଏ ଦେଖି ଥଟ୍ଟା ପରିହାସ ଆରମ୍ଭ କରିଦେଇଥିଲେ ମଧ୍ୟ ତାଙ୍କର ଗୁଣ ଗରିମା ଦେଖି କ୍ରମଶଃ ତାଙ୍କୁ ବିସ୍ମୟବିସ୍ଫାରିତ ନେତ୍ରରେ ଦେଖିବାକୁ ଲାଗିଲେ । କଲେଜରେ ବିଜ୍ଞାନ ତାଙ୍କର ଅତ୍ୟନ୍ତ ଆଦରର ବିଷୟ ଥିଲା ଓ ଅଧିକାଂଶ ସମୟ ସେ କଲେଜ ଗବେଷଣାଗାରରେ କଟାଉଥିଲେ । ବି. ଏ. ପରୀକ୍ଷାରେ ସେ ପଦାର୍ଥବିଜ୍ଞାନରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲେ ଓ ବିଶ୍ୱବିଦ୍ୟାଳୟ ପଦକ ପାଇଲେ ।

ପଦାର୍ଥ ବିଜ୍ଞାନରେ ଏମ୍. ଏ. ପଢୁଥିବା ସମୟରେ ପାଠ୍ୟବିଷୟ-ଭୁକ୍ତ କୌଣସି ବିଷୟ ନିଜର ଅଧ୍ୟାପକ ବୁଝାଇ ନ ପାରିବାରୁ ସେ ଚନ୍ଦ୍ରଶେଖର ଏକ ନୂତନ ପ୍ରକାରରେ ତାହା ବୁଝାଇ ଦେଇଥିଲେ ।

ଏହି ନୂତନ ତଥ୍ୟ ଉପରେ ତାଙ୍କର ଏକ ଲେଖା ଇଂରେଜୀ ବିଜ୍ଞାନ ପତ୍ରିକାରେ ପ୍ରକାଶ ପାଇ ଉଚ୍ଚ ପ୍ରଶଂସିତ ହୋଇଥିଲା । ୧୯୦୭ ଖ୍ରୀଷ୍ଟାବ୍ଦରେ ରମଣ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ତାଙ୍କ ପୂର୍ବରୁ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରେ ପଦାର୍ଥ ବିଜ୍ଞାନରେ ଏମ୍. ଏ. ରେ କେହି ପ୍ରଥମ ଶ୍ରେଣୀ ପାଇ ନ ଥିଲେ ।